# ଶ୍ରୀଜଗନ୍ନାଥଙ୍କ ପରମଭକ୍ତ ଜୟଦେବ

ସ୍ୱର୍ଗୀୟ କେଦାରନାଥ ମହାପାତ୍ର

ଶ୍ରୀକ୍ଷେତ୍ରବାସୀ ଭକ୍ତକବି ଶ୍ରୀଜୟଦେବ ଉତ୍କଳର ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଜଣେ ପରମ ଭକ୍ତ ଥିବା ବିଷୟ ମୈଥିଳୀ ପଣ୍ଡିତ ଶ୍ରୀ ଚନ୍ଦ୍ରଦତ୍ତଙ୍କ କୃତ ପ୍ରସିଦ୍ଧ 'ଭକ୍ତମାଳା' ଗ୍ରନ୍ଥରେ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି ।

ଉତ୍କଳ ଦେଶର ଜଗନ୍ନାଥ ପୁରୀ ପ୍ରାନ୍ତରେ ବ୍ରାହ୍ମଣ ସଂକୁଳ କେନ୍ଦୁବିଲ୍ୱ ନାମକ ଗ୍ରାମରେ ଶ୍ରୀଜୟଦେବ ଜନ୍ମ ଗ୍ରହଣ କରିଥିଲେ । ଜୟଦେବ ଗୃହ ତ୍ୟାଗ କରି ସନ୍ନ୍ୟାସ ବ୍ରତ ଅବଲମ୍ବନପୂର୍ବକ ଶ୍ରୀକ୍ଷେତ୍ର ସୀମାରେ ନିର୍ମିତ ଏକ ପର୍ଣ୍ଣକୁଟୀରରେ ବାସ କରୁଥିଲେ । ଦେବଶର୍ମା ନାମକ ଜନୈକ ବିପ୍ର ଶ୍ରୀଜଗନ୍ନାଥଙ୍କ ବରପ୍ରସାଦରୁ ଲାଭ କରିଥିବା ସ୍ୱୀୟ ପ୍ରଥମ ଅପତ୍ୟ ପଦ୍ମାବତୀଙ୍କୁ ଶ୍ରୀକ୍ଷେତ୍ର ଆଗମନପୂର୍ବକ ମହାପ୍ରଭୁଙ୍କ ନିକଟରେ ପୂର୍ବକୃତ ଶପଥ ଅନୁଯାୟୀ ତାଙ୍କ ସେବା ପାଇଁ ଉତ୍ସର୍ଗ କରିଥିଲେ । କିନ୍ତୁ ସେ ଶ୍ରୀଜଗନ୍ନାଥଙ୍କ ସ୍ୱପ୍ନାଦେଶ ପ୍ରାପ୍ତ ହୋଇ ତାଙ୍କର ପ୍ରିୟ ଭକ୍ତ ଶ୍ରୀଜୟଦେବଙ୍କୁ ସ୍ୱକନ୍ୟାଙ୍କୁ ଅର୍ପଣ କରିଥିଲେ । ସନ୍ନ୍ୟାସୀ ଶ୍ରୀଜୟଦେବ ପ୍ରଥମେ ତାଙ୍କ ସହିତ ପରିଣୟ ଫାଶରେ ଆବଦ୍ଧ ହେବା ପାଇଁ ଅନିଚ୍ଛା ପ୍ରକାଶ କରିଥିଲେ ମଧ୍ୟ ପରେ ଶ୍ରୀଜଗନ୍ନାଥଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି ଯଥାବିଧି ତାଙ୍କର ପାଣିଗ୍ରହଣ କରିଥିଲେ । ଗଭୀର ପ୍ରେମାବଦ୍ଧ ଭକ୍ତ ଦମ୍ପତି ଏକପ୍ରାଣରେ ନୃତ୍ୟଗୀତାଦି ଦ୍ୱାରା ଶ୍ରୀକୃଷ୍ଣାର୍ଚ୍ଚନରେ କାଳାତିପାତ କଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଜୟଦେବଙ୍କୁ ବିବାହ କରିବା ପୂର୍ବରୁ ପଦ୍ମାବତୀ ଜଣେ ନୃତ୍ୟ ପଟ୍ଟୟସୀ ମହିଳା ଥିଲେ । ଦାକ୍ଷିଣାତ୍ୟର ତିନୋଟି ମନ୍ଦିରରେ ପଦ୍ମାବତୀଙ୍କ ନାମ ନୃତ୍ୟାଙ୍ଗନାଭାବେ ଶିଳାଲେଖରେ ଉଲ୍ଲେଖ ଅଛି । ଜୟଦେବ ମଧ୍ୟ କଳିଙ୍ଗର କୂର୍ମପାଟକରେ ଥିବା ସଂଗୀତ ନୃତ୍ୟ ଓ ଶାସ୍ତ୍ରୀୟ କଳା ବିଦ୍ୟାଳୟରେ ଅଧ୍ୟକ୍ଷ ଥିବାର ପ୍ରମାଣ ମନ୍ଦିର ଶିଳାଲେଖରେ ମିଳୁଛି ।



ତଦନନ୍ତର ଶ୍ରୀଜୟଦେବ ସ୍ୱୀୟ ପରମାରାଧ୍ୟ ଶ୍ରୀଜଗନ୍ନାଥଙ୍କ ସନ୍ତୋଷ ବିଧାନ ନିମିତ୍ତ ଶ୍ରୀଗୀତଗୋବିନ୍ଦ ରଚନାରେ ପ୍ରବୃତ୍ତ ହେଲେ । ଏକଦା ସଂଶୟାପନ୍ନ ହୋଇ ଉପଯୁକ୍ତ ଶବ୍ଦବିନ୍ୟାସଦ୍ୱାରା ସେ ଗୀତର ପାଦ ପୂରଣ କରିବା ପାଇଁ ଅସମର୍ଥ ହେବାରୁ ଶ୍ରୀକୃଷ୍ଣ ତାଙ୍କ ଅନୁପସ୍ଥିତ ସମୟରେ ଶ୍ରୀଜୟଦେବଙ୍କ ବେଶରେ ପର୍ଣ୍ଣକୁଟୀରରେ ପ୍ରବେଶପୂର୍ବକ ଏହି ପାଦ ପୂରଣ କରି ଅନ୍ତର୍ହିତ ହୋଇଗଲେ । ସ୍ନାନ ପ୍ରତ୍ୟାବୃତ କବି ଏହା ଦେଖି ବିସ୍ମୟାଭିଭୂତ ହେବାରୁ ଶ୍ରୀକୃଷ୍ଣ ସେଦିନ ରାତ୍ରିଶେଷରେ ସ୍ୱପ୍ନରେ ତାଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇ ଦେଲେ । ନିଜ ଚକ୍ଷୁରେ ଶ୍ରୀକୃଷ୍ଣଙ୍କ ଦର୍ଶନ ଲାଭ ରୂପକ ପରମ ସୌଭାଗ୍ୟ ପ୍ରାପ୍ତ ହୋଇଥିବାରୁ, ଭକ୍ତକବିଙ୍କର ସ୍ୱପତ୍ନୀ ପଦ୍ମାବତୀଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି ବିଶେଷ ବୃଦ୍ଧି ଲାଭ କଲା । ଏହା ପରେ ସେ ପ୍ରତ୍ୟହ ପତ୍ନୀଙ୍କ ସହ ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ତନ୍ମୟ ହୋଇ ଶ୍ରୀଗୀତଗୋବିନ୍ଦ ଗାନ କରି ନୃତ୍ୟ କରିବାକୁ ଲାଗିଲେ । ଶ୍ରୀକ୍ଷେତ୍ରବାସ କାଳରେ ଏହାର ରଚନା ସମାପନାନ୍ତେ ସେ ଏହାକୁ ଶ୍ରୀଜଗନ୍ନାଥଙ୍କୁ ନୈବେଦ୍ୟ ରୂପେ ଅର୍ପଣ କରି ନିଜ ଜୀବନକୁ ଧନ୍ୟ କରିଥିଲେ ।

ଶ୍ରୀଗୀତଗୋବିନ୍ଦର ମହତ୍ୱ ଓ ଉତ୍କର୍ଷରେ ମୁଗ୍ଧ ହୋଇ ତତ୍କାଳୀନ ଉତ୍କଳାଧୀଶ ତାହାର ସମକକ୍ଷ ଅନ୍ୟ ଏକ 'ଗୀତଗୋବିନ୍ଦ' ରଚନା ପୂର୍ବକ ଶ୍ରୀଜଗନ୍ନାଥଙ୍କ ସମକ୍ଷରେ ଏହାର ଗାନକୁ ବାଧ୍ୟତାମୂଳକ କରିଥିଲେ । ଦିନେ ରାଜା ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ସମୟରେ ଶ୍ରୀଜୟଦେବ ରାଜାଜ୍ଞା ଅମାନ୍ୟ କରି ଗୀତଗୋବିନ୍ଦ ଗାନରେ ପ୍ରବୃତ୍ତ ଥିବା ଜାଣି ପାରିଥିଲେ । ଏଥିରେ ସେ ବିରକ୍ତ ହୋଇ ଶ୍ରୀଜୟଦେବଙ୍କୁ ଏହାର କାରଣ ଜିଜ୍ଞାସା କରିବାରୁ, ସେ ଉତ୍ତରରେ କହିଲେ ଯେ, ତାଙ୍କର ଗ୍ରନ୍ଥ ଶ୍ରୀଜଗନ୍ନାଥଙ୍କ ଅଧିକ ସନ୍ତୋଷପ୍ରଦ ।

ତଦନନ୍ତର ରୁଦ୍ଧଦ୍ୱାର ଗର୍ଭଗୃହ ମଧ୍ୟରେ ମହାପ୍ରଭୁଙ୍କ ସମକ୍ଷରେ ଉଭୟ ଗ୍ରନ୍ଥର ମହତ୍ୱ ପରୀକ୍ଷା ପାଇଁ ରଖାଯାଇଥିଲା । କପାଟୋନ୍ମୋଚନ କଲା ପରେ ଜୟଦେବଙ୍କ ଶ୍ରୀଗୀତଗୋବିନ୍ଦ ରାଜରଚିତ ଗୀତଗୋବିନ୍ଦ ଉପରେ ରଖାଯାଇଥିବାର ଦେଖାଗଲା । ଏଥିରେ ରାଜା ଅତ୍ୟନ୍ତ କ୍ଷୁବ୍ଧ ଓ ନିରାଶ ହେବାରୁ ଶ୍ରୀଜଗନ୍ନାଥ ତାହାଙ୍କୁ ଶ୍ରୀଗୀତଗୋବିନ୍ଦର ମହତ୍ୱ

ସ୍ୱୀକାରପୂର୍ବକ ଏହାକୁ ଲୋକ ସମାଜରେ ପ୍ରଚାର କରିବା ପାଇଁ ସ୍ୱପ୍ନରେ ଆଦେଶ ପ୍ରଦାନ କରିଥିଲେ । ରାଜା ମହାପ୍ରଭୁଙ୍କ ନିକଟରେ ସ୍ୱ-ଅପରାଧ କ୍ଷମା ପାଇଁ ପ୍ରାର୍ଥନା କରି ସେହିଦିନୁ ଶ୍ରୀଜୟଦେବଙ୍କ ପ୍ରତି ବିଶେଷ ଭକ୍ତିମାନ ହେଲେ ଏବଂ ପ୍ରତ୍ୟହ କଳି-କଳୁଷ-ନାଶନ ଶ୍ରୀଗୀତଗୋବିନ୍ଦ ପାଠ କଲେ । ଏହା ପରେ ଶ୍ରୀଗୀତଗୋବିନ୍ଦର ମାହାତ୍ମ୍ୟ ଚତୁର୍ଦ୍ଦିଗରେ ପ୍ରଚାରିତ ହେଲା । ଐତିହାସିକ ପ୍ରମାଣ ଅନୁଯାୟୀ ଯେଉଁ ଗଜପତି ସମ୍ରାଟଙ୍କ ସମୟରେ ''ଅଭିନବ ଗୀତଗୋବିନ୍ଦ'' ନାମରେ ଏକ କାବ୍ୟ ରଚିତ ହୋଇଥିଲା, ସେ ଥିଲେ ମହାନ୍ ପରାକ୍ରମଶାଳୀ ସମ୍ରାଟ ପୁରୁଷୋତ୍ତମ ଦେବ । କବିଚନ୍ଦ୍ର ରାୟ ଦିବାକର ମିଶ୍ର ଏହି କାବ୍ୟଟି ନିଜେ ରଚନା କରିଥିଲେ ମଧ ଗଜପତି ସମ୍ରାଟଙ୍କ ନାମରେ ଭଣିତା କରିଥିଲେ । ଏହି କାବ୍ୟଟି ଶ୍ରୀମନ୍ଦିରରେ ପ୍ରଚଳିତ ହୋଇଥିଲା । ଗଜପତି ସମ୍ରାଟ ପୁରୁଷୋତ୍ତମ ଦେବଙ୍କ ପୁତ୍ର ଗଜପତି ପ୍ରତାପରୁଦ୍ର ଦେବଙ୍କ ବେଳେ ଏହି ଦୁଇଟି କାବ୍ୟରୁ ଜଗନ୍ନାଥଙ୍କ ପ୍ରିୟ କେଉଁଟି ତାହାର ନିଷ୍ପତ୍ତି କରାଯାଇଥିଲା ଓ ତାହାପରେ ଶ୍ରୀମନ୍ଦିରର ଜୟବିଜୟ ଦ୍ୱାରରେ ଗଜପତିଙ୍କ ଆଦେଶ ଲିପିବଦ୍ଧ କରାଗଲା । ଜୟଦେବଙ୍କ ଗୀତଗୋବିନ୍ଦ କେଉଁ ସମୟରେ ଜଗନ୍ନାଥଙ୍କ ପାଖରେ ବୋଲାଯିବ ଏବଂ କିଏ ତାହା ବୋଲିବେ ଏକଥା ମଧ ସେଥିରେ ଲେଖା ଅଛି । ଗଜପତି ସମ୍ରାଟ ପୁରୁଷୋତ୍ତମ ଦେବଙ୍କ ସମୟ ଥିଲା ପଞ୍ଚଦଶ ଶତାବ୍ଦୀ ଏବଂ ଜୟଦେବ ଥିଲେ ଦ୍ୱାଦଶ ଶତାବ୍ଦୀର କବି । ତେଣୁ ଜଗନ୍ନାଥଙ୍କ ପାଖରେ ଏହି ପରୀକ୍ଷା ହେଲାବେଳକୁ ଜୟଦେବ ଜୀବିତ ନଥିଲେ । ଗଜପତି ପ୍ରତାପରୁଦ୍ର ଦେବଙ୍କ ସମୟରେ ହୋଇଥିବା ଏହି ପରୀକ୍ଷାଟିର କଥା କିମ୍ବଦନ୍ତୀ ବ୍ୟତୀତ ସେହି ସମୟରେ ଲେଖା ହୋଇଥିବା ''ବୈଷ୍ଣବ ଲୀଳାମୃତ'' କାବ୍ୟରେ ଉଲ୍ଲେଖ ମଧ ଅଛି ।

ଏକଦା ଶ୍ରୀକ୍ଷେତ୍ର ସମୀପବର୍ତ୍ତୀ ଏକ ଗ୍ରାମର ଶାକ ବିକ୍ରୟକାରିଣୀ ଶରତକାଳୀନ ଚନ୍ଦ୍ରିକା ବିଧୌତ ରଜନୀରେ ସ୍ୱ-ଉଦ୍ୟାନରୁ ବାଇଗଣ ତୋଳିବା ସମୟରେ ଅତି ତନ୍ମୟ ଭାବରେ ଶ୍ରୀଗୀତଗୋବିନ୍ଦର ମଧୁର-କୋମଳ-ପଦାବଳୀ ଉଚ୍ଚ ସ୍ୱରରେ ଗାନ କରୁଥିଲେ । ସର୍ବବ୍ୟାପୀ ଶ୍ରୀଜଗନ୍ନାଥ ନିଜର ଅତିପ୍ରିୟ ଶ୍ରୀଗୀତଗୋବିନ୍ଦର ମଧୁର ଗାନରେ ଅତ୍ୟନ୍ତ ମୁଗ୍ଧ ହୋଇ ଅଲକ୍ଷିତରେ ତାହାର ପଛେ ପଛେ ଚାଲିବାକୁ ଲାଗିଲେ । ଏହା ଫଳରେ ତାଙ୍କର ଶ୍ରୀଅଙ୍ଗ ଲୁଗା ବାଇଗଣ କଣ୍ଟାରେ ଛିନ୍ନଭିନ୍ନ ହୋଇଗଲା । କେତେ ସମୟ ପରେ ବାଇଗଣ ତୋଳା ସାରି ସ୍ତ୍ରୀ ଲୋକଟି ଘରକୁ ଚାଲିଯିବାରୁ ମହାପ୍ରଭୁ ଶ୍ରୀମନ୍ଦିରକୁ ଫେରି ଆସିଲେ ।

ତତ୍‌ପରଦିନ ପ୍ରଭାତରେ ପୂଜକମାନେ କପାଟୋନ୍ମୋଚନ ପୂର୍ବକ ପ୍ରଭୁଙ୍କ ଶ୍ରୀଅଙ୍ଗ ବସ୍ତ୍ର ବାଇଗଣ କଣ୍ଟାରେ ଛିନ୍ନଭିନ୍ନ ହୋଇଥିବାର ଦେଖି ବିସ୍ମୟାଭିଭୂତ ହୋଇଗଲେ । ପୂଜା ସମ୍ଭାର ନେଇ ମହାପ୍ରଭୁଙ୍କର ଦର୍ଶନ ପାଇଁ ଆଗତ ଗଜପତି ସମ୍ରାଟ ମଧ ଏହା ଲକ୍ଷ୍ୟ କରି ଅତ୍ୟନ୍ତ ବିସ୍ମିତ ହେଲେ । ଏଥିରେ ସମ୍ରାଟ ଓ ପୂଜକ ଅଶୁଭ ଆଶଙ୍କାରେ ବିଶେଷ ଉଦ୍‌ବିଗ୍ନ ଓ ଚିନ୍ତାମଗ୍ନ ହୋଇ ପାନାହାର ତ୍ୟାଗ କଲେ । ଅନ୍ତର୍ଯ୍ୟାମୀ ମହାପ୍ରଭୁ ସେହିଦିନ ନିଶାବସାନ ସମୟରେ ଉଭୟଙ୍କୁ ଶ୍ରୀଅଙ୍ଗବସ୍ତ୍ର ଛିଣ୍ଡିଛାଣ୍ଡି ଯାଇଥିବାର କାରଣ ଜଣାଇବାରୁ, ଗଜପତି ତତ୍‌ପରଦିନ ଉକ୍ତ ଶାକ ବିକ୍ରୟକାରିଣୀଙ୍କୁ ଡକାଇ ଆଣି ତାଙ୍କୁ ମହାପ୍ରଭୁଙ୍କ ନିକଟରେ ନିତ୍ୟ ଶ୍ରୀଗୀତଗୋବିନ୍ଦ ଗାନ ପାଇଁ ନିଯୁକ୍ତି ଦେଲେ । ଗଜପତି ସମ୍ରାଟ ଶ୍ରୀଜୟଦେବଙ୍କୁ ମହାପ୍ରଭୁଙ୍କ ପରମଭକ୍ତ ରୂପେ ସ୍ୱୀକାର କରି ତାଙ୍କୁ ସମ୍ମାନ ପ୍ରଦର୍ଶନ କରିବା ନିମିତ୍ତ ତାଙ୍କ ବାସସ୍ଥାନକୁ ଯାଇଥିଲେ ।

ଏକଦା ଉତ୍କଳର ମହାରାଣୀ, ପଦ୍ମାବତୀଙ୍କ ସତୀତ୍ୱ ଓ ପତିପ୍ରାଣତା ପରୀକ୍ଷା କରିବା ଉଦ୍ଦେଶ୍ୟରେ ରାଜାଙ୍କ ସହିତ ଦେବ ଦର୍ଶନ ପାଇଁ ଯାଇଥିବା ଭକ୍ତକବି ଜୟଦେବଙ୍କ ମିଥ୍ୟା ଆକସ୍ମିକ ମୃତ୍ୟୁ ସମ୍ବାଦ ଛଳନାରେ କାନ୍ଦି ଜଣାଇ ଦେଲେ । ଏହା ଶ୍ରବଣ କରିବା ମାତ୍ରକେ ପତିଗତପ୍ରାଣା ପଦ୍ମାବତୀଙ୍କ ପ୍ରାଣବାୟୁ ଉଡ଼ିଗଲା । ତାଙ୍କର ହଠାତ୍ ମୃତ୍ୟୁ ଘଟିବାରୁ ରାଣୀ ଘୋର ଦୁଃଖ ଓ ଭୟରେ ବିଳାପ କରିବାକୁ ଲାଗିଲେ । ଇତ୍ୟବସରରେ ସମ୍ରାଟ ଶ୍ରୀଜୟଦେବଙ୍କ ସହ ଦେବ ଦର୍ଶନରୁ ଫେରି କ୍ରନ୍ଦନଜନିତ କୋଳାହଳର କାରଣ ଜାଣିବା ପାଇଁ ଅନ୍ତଃପୁରକୁ ଗମନ କଲେ । ସେଠାରେ ବିଗତପ୍ରାଣା ଶାୟିତା ପଦ୍ମାବତୀଙ୍କୁ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲେ । ରାଣୀଙ୍କଠାରୁ ପଦ୍ମାବତୀଙ୍କ ମୃତ୍ୟୁ ବୃତ୍ତାନ୍ତ ଜାଣି ରାଜା ତାଙ୍କ (ରାଣୀଙ୍କ) ଘୋର ପାପର ଦଣ୍ଡବିଧାନ ସ୍ୱରୂପ ତାଙ୍କୁ ଗୃହତ୍ୟାଗ କରିବା ପାଇଁ କ୍ରୋଧରେ ଆଦେଶ ଦେଲେ । ରାଣୀ କୌତୁକରେ ଏପରି କରିଥିବାରୁ ତାଙ୍କର ଅପରାଧ କ୍ଷମଣୀୟ ବୋଲି ଶ୍ରୀଜୟଦେବ ରାଜାଙ୍କୁ ସାନ୍ତ୍ୱନା ଦେଲେ । ତତ୍‌ପରେ ଭକ୍ତକବି ଶ୍ରୀଜଗନ୍ନାଥଙ୍କୁ ସ୍ମରଣ ପୂର୍ବକ ବାଦ୍ୟବାଦନ ସହ ସ୍ୱ-ମୃତପତ୍ନୀଙ୍କ ପାଖରେ ପ୍ରିୟ ଗୀତଗୋବିନ୍ଦ ତନ୍ମୟ ଚିତ୍ତରେ ଗାନ କରିବାକୁ ଲାଗିଲେ । ଭକ୍ତକବି କଣ୍ଠ ବିନିସୃତ ମଧୁର ସଂଗୀତର ମୃତ ସଂଜୀବନୀ ମୂର୍ଚ୍ଛନା ପଦ୍ମାବତୀଙ୍କ ପ୍ରାଣହୀନ ଶରୀରରେ ପୁନର୍ବାର ପ୍ରାଣସଂଚାର କରିବାରୁ, ସେ ନିଦ୍ରୋତ୍‌ଥିତା ପରି ଉଠି ବସିଥିଲେ । ସକଳ ଅନ୍ତଃପୁରବାସୀ ବିସ୍ମୟୋତ୍‌ଫୁଲ୍ଲ ଲୋଚନରେ ଏହି ଜୀବନ୍ୟାସ ପ୍ରକ୍ରିୟା ସନ୍ଦର୍ଶନରେ ଭକ୍ତକବିଙ୍କୁ ସାଧୁବାଦ ଅର୍ପଣ କରିଥିଲେ । ଏହାପରେ ଶ୍ରୀଜୟଦେବ ହୃଷ୍ଟ ଚିତ୍ତରେ ପ୍ରାଣପ୍ରିୟା ପଦ୍ମାବତୀଙ୍କ ସହ ସ୍ୱଗୃହକୁ ଗମନ କଲେ ।

ଏକଦା ସାଧୁପ୍ରବର ଶ୍ରୀଜୟଦେବ ସ୍ୱଭକ୍ତମାନଙ୍କ ନିମନ୍ତ୍ରଣ ରକ୍ଷା ନିମିତ୍ତ ଶ୍ରୀକ୍ଷେତ୍ର ଛାଡ଼ି ଏକ ଦୂର ଗ୍ରାମକୁ ଯାତ୍ରା କରିଥିଲେ । ସେଠାରେ ସେ ବିଶେଷ ସମ୍ମାନିତ ହୋଇ ବହୁ ବସ୍ତ୍ର, ଅଳଙ୍କାର ଓ ସୁବର୍ଣ୍ଣପ୍ରାପ୍ତ ହୋଇ ଅରଣ୍ୟ ମାର୍ଗରେ ପୁରୁଷୋତ୍ତମ ପୁରୀକୁ ପ୍ରତ୍ୟାବର୍ତ୍ତନ କଲେ । ପଥ ମଧରେ ନିଷ୍ଠୁର ଓ ଅତ୍ୟନ୍ତ ହିଂସା ପରାୟଣ ଚାରିଜଣ ଦସ୍ୟୁଙ୍କ ହାବୁଡ଼ରେ ପଡ଼ିଯିବାରୁ ପ୍ରାଣରକ୍ଷା ଉଦ୍ଦେଶ୍ୟରେ ସେମାନଙ୍କୁ ସମସ୍ତ ଅଳଙ୍କାରାଦି ଧନରତ୍ନ ଅର୍ପଣ କରିଥିଲେ । ତଥାପି ନିର୍ଦ୍ଦୟ ମହାଦୁଷ୍ଟ ଦୁର୍ବୃତ୍ତଗଣ ସାଧୁଙ୍କୁ ସ୍ୱଗୃହକୁ ଫେରିବାକୁ ସୁଯୋଗ ନଦେଇ ତାଙ୍କ ହାତଗୋଡ଼ ଏକାଠି ବାନ୍ଧି ହାତ ଓ ପାଦକୁ ଖଣ୍ଡାରେ ହାଣି ଦେଲେ

ଏବଂ ତାଙ୍କୁ ଜଙ୍ଗଲ ମଧ୍ୟରେ ଏକ ନିର୍ଜନ ସ୍ଥାନରେ କ୍ଷତବିକ୍ଷତ ଅବସ୍ଥାରେ ପକାଇ ଦେଇ ଚାଲି ଗଲେ । କ୍ଷୁଧାତୃଷାର୍ତ୍ତ ସାଧୁ ଜୟଦେବ ନିଜର ଏହି ଘୋର ଦୁର୍ଦ୍ଦଶାରେ ବିଚଳିତ ନହୋଇ ଶ୍ରୀଜଗନ୍ନାଥଙ୍କ ସ୍ତୁତି ଗାନ କରିବାକୁ ଲାଗିଲେ ।

ଏକଦା ରାଜା ଅଶ୍ୱପୃଷ୍ଠରେ ଆରୋହଣ ପୂର୍ବକ ସେହି ବନରେ ମୃଗୟା କରୁଥିବା ସମୟରେ ଦୁର୍ଦ୍ଦଶାଗ୍ରସ୍ତ ଓ ପରିତ୍ୟକ୍ତ ସାଧୁ ଜୟଦେବଙ୍କ ଉପରେ ତାଙ୍କର ଦୃଷ୍ଟି ପଡ଼ିଗଲା । ସେ ତତ୍‌କ୍ଷଣାତ୍ ତାଙ୍କୁ ଶିବିକା (ପାଲିଙ୍କି)ରେ ରାଜପ୍ରାସାଦକୁ ଅଣାଇ ସାଧ୍ୱୀ ପଦ୍ମାପତୀଙ୍କ ତତ୍ତ୍ୱାବଧାନରେ ରଖି ଦେଲେ । ଏହାର କିଛି ଦିନ ପରେ ସାଧୁ ବେଶଧାରୀ ସେହି ଦସ୍ୟୁଗଣ ଭକ୍ତକବିଙ୍କ ଗୃହରେ ଅତିଥି ହେବାରୁ ତାଙ୍କ ଆଦେଶରେ ସତୀ ପଦ୍ମାବତୀ ଅତି ଯତ୍ନ ଓ ଆଦର ସହକାରରେ ସେମାନଙ୍କ ପରିଚର୍ଯ୍ୟା କରିଥିଲେ । ତାଙ୍କ ଅନୁରୋଧରେ ରାଜା ମଧ୍ୟ ସେମାନଙ୍କୁ ବିବିଧ ରତ୍ନ, ବସ୍ତ୍ର ଓ ଆଭରଣାଦି ଦାନ କରିଥିଲେ ଏବଂ ନିରାପଦରେ ବନାଞ୍ଚଳ ଅତିକ୍ରମ ନିମିତ୍ତ ସେମାନଙ୍କ ସହିତ କେତେକ ସଶସ୍ତ୍ର ପଦାତିକ ସୈନ୍ୟ ପଠାଇଥିଲେ ।

ଏହାପରେ ରାଜଭୃତ୍ୟମାନେ ସେମାନଙ୍କ ପ୍ରତି ସାଧୁ ଜୟଦେବଙ୍କର ଏପରି ଅତିଶୟ ଶ୍ରଦ୍ଧା ଓ ଭକ୍ତି ପ୍ରଦର୍ଶନର କାରଣ ଜିଜ୍ଞାସା କରିବାରୁ ସେମାନେ ତାଙ୍କ ବିରୁଦ୍ଧରେ ସଂପୂର୍ଣ୍ଣ ଏକ ମିଛ ଘଟଣା ବର୍ଣ୍ଣନା କରିଥିଲେ । ଯଥା - ସେମାନେ କର୍ଣ୍ଣାଟକାଧିପତିଙ୍କଦ୍ୱାରା ଅତିଥି ରୂପେ ସତ୍‌କୃତ ହେଉଥିବା ସମୟରେ ସେଠାରେ ଉପଗତ କବି ଜୟଦେବ ସେଠା ରାଜାଙ୍କଦ୍ୱାରା ଏକ ଚୌର୍ଯ୍ୟ ଅପରାଧରେ ଦଣ୍ଡିତ ହୋଇଥିଲେ । ରାଜାବେଶରେ ତାଙ୍କ ଦଣ୍ଡବିଧାନ ପାଇଁ ପ୍ରେରିତ କତିପୟ ଚାଣ୍ଡାଳ ତାଙ୍କୁ ରାଜ୍ୟରୁ ବହିଷ୍କାର କରି ହତ୍ୟା କରିବା ପାଇଁ ଉଦ୍ୟତ ହେଉଥିଲେ । କିନ୍ତୁ ଶ୍ରୀଜୟଦେବ ସେମାନଙ୍କୁ ଧନରତ୍ନ ଦାନ ଦ୍ୱାରା ସନ୍ତୁଷ୍ଟ କରି ପ୍ରାଣଭିକ୍ଷା କରିବାରୁ ସେମାନେ ତାଙ୍କୁ ଜୀବନରେ ନମାରି ହାତଗୋଡ଼ କାଟି ଏକ ଜଙ୍ଗଲରେ ଛାଡ଼ି ଦେଇ ଆସିଲେ । କାଳେ ସେମାନେ ତାଙ୍କ ପୂର୍ବ ଚୌର୍ଯ୍ୟକ୍ରିୟାଜନିତ ଦଣ୍ଡବିଧାନ ବିଷୟ ପ୍ରକାଶ କରି ଦେବେ, ଏହି ଆଶଙ୍କାରେ କପଟୀ ସାଧୁ ଶ୍ରୀଜୟଦେବ ସେମାନଙ୍କୁ ଏପରି ସାଦର ଅଭ୍ୟର୍ଥନା କରିଥିଲେ ।

ସାଧୁ ମହାତ୍ମାଙ୍କ ନାମରେ ଏପରି ଘୋର ମିଥ୍ୟାପବାଦ କରିବା ସମୟରେ ହଠାତ୍ ବଜ୍ରପାତଦ୍ୱାରା ସେମାନଙ୍କ ପ୍ରାଣନାଶ ଘଟିଥିଲା । ରାଜଭୃତ୍ୟଗଣ ରାଜାଙ୍କୁ ଦୁର୍ବୃତ୍ତଗଣଙ୍କ ଆକସ୍ମିକ ମୃତ୍ୟୁ ସମ୍ବାଦ ଜଣାଇ ସେମାନଙ୍କୁ ପ୍ରଦତ୍ତ ଧନରତ୍ନ ସମୂହ ପ୍ରତ୍ୟର୍ପଣ କରିଥିଲେ । ସେମାନଙ୍କ ମୃତ୍ୟୁର ଶୋକରେ ଅଧୀର ହୋଇ ଉଦାରଚେତା ଶ୍ରୀଜୟଦେବ ନିଜ ଛିନ୍ନ ହସ୍ତପଦ ଭୂଇଁରେ କଚାଡ଼ି କାନ୍ଦିବାରୁ, ପ୍ରଭୁ ଜଗନ୍ନାଥଙ୍କ କୃପାରୁ ପୁନର୍ବାର ତାଙ୍କ ହସ୍ତପଦର ଉଦ୍ଭବ ଘଟିଥିଲା । ଏତଦ୍ ଦର୍ଶନରେ ବିସ୍ମୟାଭିଭୂତ ରାଜାଙ୍କ ଅନୁରୋଧରେ ମହାପ୍ରାଣ ଜୟଦେବ ତାଙ୍କ ପ୍ରତି ଉକ୍ତ ସାଧୁ ବେଶଧାରୀ ଦସ୍ୟୁମାନଙ୍କ ପୂର୍ବ ଅତ୍ୟାଚାର ବୃତ୍ତାନ୍ତ ବର୍ଣ୍ଣନା କରିଥିଲେ । ଏହି ପ୍ରାଣଘାତକ ନୃଶଂସମାନଙ୍କପ୍ରତି ତାଙ୍କର କ୍ଷମା ଓ ମମତା ପ୍ରଦର୍ଶନରେ ରାଜା ବିମୁଗ୍ଧ ହୋଇଥିଲେ ।

ଦିନେ ଜରାଗ୍ରସ୍ତ ସାଧୁ ଶ୍ରୀଜୟଦେବ ବହୁ କଷ୍ଟରେ ନିତ୍ୟ ସଂକଳ୍ପିତ ପ୍ରାଚୀସ୍ନାନ ସାରି ସ୍ୱଗୃହକୁ ଫେରିବା ସମୟରେ ଦୁର୍ବଳତା ଯୋଗୁଁ ବାଟରେ ପଡ଼ି ମୂର୍ଚ୍ଛିତ ହେଲେ । ପ୍ରାଚୀସ୍ନାନ ପାଇଁ ବହିର୍ଗତ ରାଜା ପଥ ମଧ୍ୟରେ ଭକ୍ତଙ୍କର ଏପରି ଦୁର୍ଦ୍ଦଶା ଅବଲୋକନ କରି ତାଙ୍କୁ ପାଲିଙ୍କିରେ ବସାଇ ନିଜ ଘରେ ଛାଡ଼ି ଦେଲେ । ଜରା ଜନିତ ଅସାମର୍ଥ୍ୟ ଘଟିଥିବା ଯୋଗୁଁ ତାଙ୍କୁ ନିତ୍ୟ ଶିବିକାରୋହଣ ପୂର୍ବକ ପ୍ରାଚୀସ୍ନାନ ପାଇଁ ଯିବାକୁ ବିନୀତ ଅନୁରୋଧ କଲେ । କିନ୍ତୁ ପ୍ରତ୍ୟହ ପଦଚାରୀ ହୋଇ ପ୍ରାଚୀସ୍ନାନ କରିବା ତାଙ୍କର ବ୍ରତ ହୋଇଥିବାରୁ, ସେ ଏହି ଅନୁରୋଧକୁ ପ୍ରତ୍ୟାଖ୍ୟାନ କଲେ । ଏଥିରେ ରାଜା ବିଶେଷ ଚିନ୍ତିତ ହେଲେ । ଉତ୍କଳର ରାଜା ପ୍ରାଚୀସ୍ନାନ କରିବା କଥା ଏକ କିମ୍ବଦନ୍ତୀ ହୋଇପାରେ, କିନ୍ତୁ ଐତିହାସିକ ସତ୍ୟ ଉପରେ ପର୍ଯ୍ୟବସିତ ନୁହେଁ ।

ସେଦିନ ରାତିରେ ରାଜା, ରାଜମାନ୍ୟ ପୁରୋହିତ, ରାଜାଦୃତ ମହନ୍ତଗଣ, ଉକ୍ତ ଗ୍ରାମବାସୀ ଦ୍ୱିଜବୃନ୍ଦ ଏବଂ ସ୍ୱୟଂ ଭକ୍ତପ୍ରବର ଶ୍ରୀଜୟଦେବ ଶୁକ୍ଳାମ୍ବରଧାରିଣୀ, ମକରବାହିନୀ, ପଦ୍ମହସ୍ତା ଗଙ୍ଗାଦେବୀଙ୍କର ଶ୍ରୀଜୟଦେବଙ୍କ ବାମ୍ଫିରେ ଆବିର୍ଭାବ ସମ୍ପର୍କରେ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଥିଲେ । ତତ୍‌ପରଦିନ ରାଜା, ମନ୍ତ୍ରୀ ଓ ଗ୍ରାମର ବୃଦ୍ଧମାନେ ଶ୍ରୀଜୟଦେବଙ୍କୁ ମଧ୍ୟ ତାଙ୍କପ୍ରତି ଶ୍ରୀରୂପିଣୀ ଗଙ୍ଗାଦେବୀଙ୍କ ସ୍ୱପ୍ନାଦେଶ ବିଷୟ ପ୍ରକାଶ କରିଥିଲେ । ତହୁଁ ଶ୍ରୀଜୟଦେବ ଓ ପଦ୍ମାବତୀ ପୁରଃସର ସକଳଜନ ଉକ୍ତ ବାମ୍ଫି ନିକଟରେ ସ୍ନାନ ପାଇଁ ଉପଗତ ହେଲେ । ମହାତ୍ମା ଜୟଦେବ ଭକ୍ତିପୂର୍ଣ୍ଣ ଚିତ୍ତରେ ମନ୍ତ୍ର ପାଠକରି ସ୍ନାନାରମ୍ଭ କରିବା ମାତ୍ରେ ଜଗତ୍‌ମାନ୍ୟା, ଜଗନ୍ମାତା, ଜଗତ୍ ଉଦ୍ଧାରକାରିଣୀ ଗଙ୍ଗାଦେବୀଙ୍କର ସେଠାରେ ଆବିର୍ଭାବ ଘଟିଥିଲା । ଏହା ଫଳରେ ଉକ୍ତ ପୀଠର ଜଳରାଶି ତରଙ୍ଗାୟିତ ହୋଇ ଦୁଗ୍ଧ, କୁନ୍ଦ, ଇନ୍ଦୁଙ୍କ ପରି ନିର୍ମଳ ଓ ଶୁଭ୍ରବର୍ଣ୍ଣ ଧାରଣ କଲା । ବହୁ ବିକଚକମଳଦ୍ୱାରା ଏହାର ଶୋଭା ବର୍ଦ୍ଧିତ ହେଲା । ଗଙ୍ଗାତୀର ପରି ଏହାର ଚତୁର୍ଦ୍ଦିଗ ସିକତାଚ୍ଛାଦିତ ହୋଇଗଲା । ସେହିଦିନୁ ଏହା ଏକ ସର୍ବାଭୀଷ୍ଟ ପ୍ରଦାୟକ ମହାତୀର୍ଥ ରୂପେ ପରିଗଣିତ ହେଉଅଛି । ଏହି ଅତ୍ୟାଶ୍ଚର୍ଯ୍ୟ ଘଟଣା ବର୍ଣ୍ଣନା ପରେ 'ଭକ୍ତମାଳା' ଗ୍ରନ୍ଥକାର ଶ୍ରୀ ଚନ୍ଦ୍ରଦତ୍ତ ଭକ୍ତାଗ୍ରଣୀ ଶ୍ରୀଜୟଦେବଙ୍କ ଜୀବନ ଚରିତ ବର୍ଣ୍ଣନା ସମାପ୍ତ କରିଛନ୍ତି । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଖୋର୍ଦ୍ଧା ଜିଲ୍ଲା ବାଲିଅନ୍ତା ବ୍ଲକର ପ୍ରାଚୀନଦୀ କୂଳରେ ଥିବା ଜୟଦେବଙ୍କ ଜନ୍ମସ୍ଥାନଠାରୁ ପ୍ରାଚୀ ନଦୀର ବନମାଳୀପୁରସ୍ଥ ତ୍ରିବେଣୀ ସଂଗମ ଘାଟ ମାତ୍ର ଦୁଇ ମାଇଲ ବାଟ । ପ୍ରାଚୀକୁ ଉତ୍କଳରେ ଗଙ୍ଗାନଦୀ କୁହାଯାଉଥିଲା ଏବଂ ଏହାର ଉଲ୍ଲେଖ ଅନେକ ପୁରାଣରେ ଅଛି । ଏବେ ମଧ୍ୟ ଏଠାରେ ଥିବା ତ୍ରିବେଣୀ ଘାଟ ନାମକ ଏକ ଅତି ପବିତ୍ର ସ୍ଥଳ ଅଛି ଯେଉଁଠାରେ ଏକ ମେଳା ଅନୁଷ୍ଠିତ ହୁଏ ।

ସୌଜନ୍ୟ : ସୂଚନା ଓ ଲୋକ ସଂପର୍କ ବିଭାଗ

# ଶ୍ରୀମନ୍ଦିର ଓ ରାସଲୀଳା



ଅଜିତ କୁମାର ତ୍ରିପାଠୀ

ଆଜିର ଆନ୍ଧ୍ରପ୍ରଦେଶର ଶ୍ରୀକାକୁଲମ୍ ଜିଲ୍ଲାର ନଗରୀ କଟକ ଦିନେ କଳିଙ୍ଗ ରାଜ୍ୟର କଳିଙ୍ଗନଗର ନାମରେ ଖ୍ୟାତ ଥିଲା । ବଂଶଧାରା ନଦୀ ତଟବର୍ତ୍ତୀ ଏହି ନଗର, ଦିନେ କଳିଙ୍ଗର ପ୍ରାଚୀନ ଗଙ୍ଗବଂଶୀୟ ରାଜାମାନଙ୍କର ରାଜଧାନୀ ଥିଲା । ସେହି କଳିଙ୍ଗ ନଗରକୁ ଲାଗି ମୁଖଲିଙ୍ଗମ୍ ନାମକ ଅନ୍ୟ ଏକ ଗ୍ରାମରେ ମଧୁକେଶ୍ୱର ଶିବଙ୍କର ଏକ ପ୍ରାଚୀନ ମନ୍ଦିର ଅଛି । ଗଙ୍ଗବଂଶୀୟ ମହାରାଜା ମଧୁକାମାର୍ଣ୍ଣବ ଦେବଙ୍କ ରାଜତ୍ୱ କାଳରେ ଏହି ମନ୍ଦିରଟି ନିର୍ମିତ ହୋଇଥିଲା ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀରେ । ପ୍ରାଚୀନ କଳିଙ୍ଗର ବ୍ରାହ୍ମଣ ଭାବେ ଖ୍ୟାତ କାଳିଙ୍ଗୀ ଜାତିର ପରିବାରମାନେ ସେହି ମନ୍ଦିରରେ ସେବକ ଭାବେ ନିଯୁକ୍ତି ପାଇଥିଲେ ।

ରାଜା ମଧୁକାମାର୍ଣ୍ଣବ ଦେବଙ୍କ ପୁତ୍ର ବଜ୍ର ହସ୍ତଦେବ ସେହି ଶୈବପୀଠର ଅନେକ ଉନ୍ନତି ବିଧାନ କରିଥିଲେ । ତାଙ୍କ ମାତୁଳାଳୟ ଥିଲା ଦକ୍ଷିଣ ଭାରତର ବୈଦୁମ୍ଭ ରାଜ୍ୟରେ । ସେଠାରୁ କେତେକ ନର୍ତ୍ତକନର୍ତ୍ତକୀଙ୍କୁ ବଜ୍ର ହସ୍ତଦେବ କଳିଙ୍ଗ ଅଣାଇ ସେମାନଙ୍କୁ ଥଇଥାନ କରିବା ପାଇଁ ଗ୍ରାମ ଦାନ କରିଥିଲେ । ସେହି ଦେବନର୍ତ୍ତକୀମାନଙ୍କୁ ସେ ମଧୁକେଶ୍ୱର ମନ୍ଦିରରେ ନୃତ୍ୟ ପରିବେଷଣ କରିବାର ସୁବନ୍ଦୋବସ୍ତ କରିଥିଲେ । କଳିଙ୍ଗନଗରଠାରୁ ୧୯ କିଲୋମିଟର ଦୂରରେ ସମୁଦ୍ର କୂଳରେ ଶ୍ରୀକୂର୍ମପାଟକ ଗ୍ରାମରେ ସେହି ନର୍ତ୍ତକ ନର୍ତ୍ତକୀମାନେ ରହିବା ପାଇଁ ଏକ ବସ୍ତି ନିର୍ମାଣ କରାଯାଇଥିଲା । ସେଠାରେ ଶ୍ରୀକୂର୍ମ ଅବତାର ବିଷ୍ଣୁଙ୍କ ମନ୍ଦିର ଥିଲା । ଏହାକୁ ଶ୍ରୀକୂର୍ମ ମନ୍ଦିର କୁହାଯାଉଥିଲା ।

ଦକ୍ଷିଣ ଭାରତରୁ ଆସିଥିବା ବୈଷ୍ଣବ ସମ୍ପ୍ରଦାୟ ସେହି ଶ୍ରୀକୂର୍ମ ମନ୍ଦିରରେ ରହି ଛାତ୍ରମାନଙ୍କୁ ସଂସ୍କୃତ ସାହିତ୍ୟ ଓ ଧର୍ମଶାସ୍ତ୍ର ଶିକ୍ଷା ଦେଉଥିଲେ । ନର୍ତ୍ତକୀମାନଙ୍କ ଶିକ୍ଷା ଓ ତାଲିମ ପାଇଁ ସେହି ଗ୍ରାମରେ ଏକ ସଂଗୀତଶାଳା ଥିଲା । କୂର୍ମପାଟକ ସେତେବେଳର କଳିଙ୍ଗ ରାଜ୍ୟରେ ଧର୍ମ, ସାହିତ୍ୟ, ସଂଗୀତ, ନୃତ୍ୟକଳା ଓ ସଂସ୍କୃତିର ଏକ ପ୍ରଖ୍ୟାତ ପୀଠ ଥିଲା । ମୁଖଲିଙ୍ଗମ୍‌ଠାରେ ଥିବା ମଧୁକେଶ୍ୱର ମନ୍ଦିର କଳିଙ୍ଗରେ ଶୈବଧର୍ମର ଏକ ବିଖ୍ୟାତ ପୀଠ ଥିଲାବେଳେ ଶ୍ରୀକୂର୍ମ କ୍ଷେତ୍ର ବା କୂର୍ମପାଟକରେ ଥିବା ବିଷ୍ଣୁ ମନ୍ଦିର ଦକ୍ଷିଣରୁ ଆସିଥିବା ବୈଷ୍ଣବମାନଙ୍କର ଏକ ପବିତ୍ର ପୀଠସ୍ଥଳୀ ଥିଲା ।

ରାଜା ବଜ୍ର ହସ୍ତଦେବଙ୍କ ନାତି ଚୋଡ଼ଗଙ୍ଗଦେବ ଖ୍ରୀ:୧୦୭୨ରେ ଜନ୍ମ ହୋଇଥିଲେ । ତାଙ୍କୁ ପାଞ୍ଚ ବର୍ଷ ବୟସ ହୋଇଥିଲା ବେଳେ ତାଙ୍କ ପିତା ରାଜରାଜ ଦେବଙ୍କର ଅକାଳ ମୃତ୍ୟୁ ହୁଏ । ତାଙ୍କ ମାମୁଁ ବେଙ୍ଗି ରାଜ୍ୟର ଶାସନକର୍ତ୍ତା ବୀରଚୋଡ଼ ବିଧବା ଭଗିନୀ ରାଜସୁନ୍ଦରୀଙ୍କ ଅନୁରୋଧରେ ସେ କଳିଙ୍ଗ ନଗରୀ ଆସି ବାଳକ ଚୋଡ଼ଗଙ୍ଗଙ୍କୁ ରାଜ ସିଂହାସନରେ ବସାଇଲେ । ନିଜ ବାଳୁତ ଝିଅ ଗୁଣିଚୋଡ଼ିଙ୍କୁ ଭଣଜା ଚୋଡ଼ଗଙ୍ଗଦେବଙ୍କ ସହ ବିବାହ ଦେଇ ରାଜ୍ୟଟି ଅରାଜକ ନୁହେଁ ବୋଲି ଘୋଷଣା କଲେ । ଶାସ୍ତ୍ରବିଦ୍ୟା ଓ ଯୁଦ୍ଧବିଦ୍ୟାରେ ଚୋଡ଼ଗଙ୍ଗଦେବଙ୍କ ତାଲିମ ପାଇଁ ତାଙ୍କ ମାମୁଁ ଉପଯୁକ୍ତ ଶିକ୍ଷକର ବନ୍ଦୋବସ୍ତ କଲେ । ନାନା ଶାସ୍ତ୍ରରେ ପାଣ୍ଡିତ୍ୟ ଲାଭ କରି ଓ ଯୁଦ୍ଧକଳାରେ କୁଶଳତା ହାସଲ କରି ଚୋଡ଼ଗଙ୍ଗଦେବ ଜଣେ ଆଦର୍ଶ ବୀର ପୁରୁଷ ରୂପେ ଶାସନ ଭାର ଗ୍ରହଣ କଲେ ।

ଚୋଡ଼ଗଙ୍ଗଦେବ ପ୍ରଥମେ ସୋମବଂଶୀ ରାଜା କର୍ଣ୍ଣଦେବଙ୍କ ଅଧୀନରେ ଥିବା ଉତ୍କଳ ଓ ଚାଳୁକ୍ୟ ବଂଶୀ ରାଜତ୍ୱ କରୁଥିବା ବେଙ୍ଗୀ ରାଜ୍ୟକୁ ଆକ୍ରମଣ କରି ଉଭୟକୁ କଳିଙ୍ଗ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କଲେ । ତା'ପରେ ୧୧୧୨ ଖ୍ରୀଷ୍ଟାବ୍ଦରେ ନିଜ ରାଜଧାନୀକୁ ବଂଶଧାରା ତଟରୁ ଉତ୍କଳକୁ ଉଠାଇ ଆଣି ମହାନଦୀ ତଟରେ ବସାଇଲେ । ଏହି ରାଜଧାନୀର ନାମ ହେଲା ବାରଣାସୀ କଟକ । ପରେ ଅପଭ୍ରଂଶ ହୋଇ ଏହାକୁ ବିଡ଼ାନାସୀ କୁହାଗଲା ।

ବଙ୍ଗର ପାଳ ବଂଶୀୟ ମହାରାଜା ରାମପାଳ ତାଙ୍କ ମିତ୍ର କେଶରୀ ବଂଶୀୟ ଶେଷ ରାଜା କର୍ଣ୍ଣଦେବଙ୍କ ପରାଜୟ ପରେ ତାଙ୍କ ସପକ୍ଷରେ କଳିଙ୍ଗ ବିରୁଦ୍ଧରେ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଲେ ଚୋଡ଼ଗଙ୍ଗଦେବ ଏକ ବିରାଟ ସେନାବାହିନୀର ନେତୃତ୍ୱ ନେଇ ଗଙ୍ଗା

ତଟବର୍ତ୍ତୀ ଆରମ୍ୟ ନଗର ବା ଆଧୁନିକ ଆରାମବାଗ ଅଧିକାର କରି ସେଠାରୁ ଅଗ୍ରସର ହୋଇ ମନ୍ଦାରଗଡ଼ ଅବରୋଧ କଲେ । ଯୁଦ୍ଧରେ ମନ୍ଦାରଗଡ଼ ରାଜା ରାମପାଳ ନିହତ ହେଲେ । ଏହିପରି ଚୋଡ଼ଗଙ୍ଗଦେବ ଆଧୁନିକ ହୁଗୁଳି ଜିଲ୍ଲା ଅଧିକାର କରିଥିଲେ । ୧୧୨୬ ଖ୍ରୀ: ପର୍ଯ୍ୟନ୍ତ ଚୋଡ଼ଗଙ୍ଗ ନିଜର ପରିବାରଙ୍କୁ ପୁରୁଣା ରାଜଦାନୀ କଳିଙ୍ଗନଗରରେ ରଖାଇଥିଲେ । ସମଗ୍ର ସାମ୍ରାଜ୍ୟରେ ଶାନ୍ତି ପ୍ରତିଷ୍ଠା ହେଲାପରେ ସେ ସପରିବାର କଳିଙ୍ଗନଗର ଛାଡ଼ି ୧୧୨୬ ଖ୍ରୀ:ରେ ବାରଣାସୀ କଟକସ୍ଥ ରାଜପ୍ରାସାଦରେ ଆସି ରହିଲେ ।

୧୧୪୨ ମସିହାରେ ଚୋଡ଼ଗଙ୍ଗଦେବ ୭୦ ବର୍ଷ ବୟସରେ ପଦାର୍ପଣ କଲେ ଏବଂ ଜ୍ୟେଷ୍ଠପୁତ୍ର କାମାର୍ଣ୍ଣବଦେବଙ୍କୁ ପୁରୀ ଜଗନ୍ନାଥ ମନ୍ଦିରରେ ଜଗନ୍ନାଥଙ୍କ ସମକ୍ଷରେ ଅଭିଷେକ କରାଇଲେ । ନିଜେ ଶ୍ରୀକ୍ଷେତ୍ରରେ ଏକ ରାଜପ୍ରସାଦ ତିଆରି କରି ସେଠାରେ ରହି ଜଗନ୍ନାଥଙ୍କ ସେବାରେ ଜୀବନର ଅବଶିଷ୍ଟ କାଳ କଟାଇଲେ । ଯଯାତିକେଶରୀଙ୍କଦ୍ୱାରା ନିର୍ମିତ ହୋଇଥିବା ଜଗନ୍ନାଥ ମନ୍ଦିର କ୍ଷୁଦ୍ର ଓ ଜୀର୍ଣ୍ଣ ହୋଇଥିବାରୁ ଚୋଡ଼ଗଙ୍ଗଦେବ ସେଠାରେ ଏକ ବିଶାଳ ମନ୍ଦିରର ନିର୍ମାଣ କରାଇଲେ । ଚୋଡ଼ଗଙ୍ଗଦେବଙ୍କ ଜୀବନ କାଳରେ ଏହି ମନ୍ଦିରରେ ତ୍ରିମୂର୍ତ୍ତି ସ୍ଥାପନ ହୋଇ ପାରିନଥିଲେ । କିନ୍ତୁ ପ୍ରାଚୀନ କଳିଙ୍ଗର ମଧୁକେଶ୍ୱର, ଶ୍ରୀକୂର୍ମ ଓ ସିଂହାଚଳର (ସୀମାଚଳମ୍) ଶ୍ରୀବରାହନୃସିଂହ ମନ୍ଦିରରେ ପ୍ରଚଳିତ ଆରାଧନା ନୀତିକୁ ପୁରୀ ଶ୍ରୀମନ୍ଦିରରେ ପ୍ରବର୍ତ୍ତିତ କରିଥିଲେ ।

ଆଜିର ନୃସିଂହ ମନ୍ଦିର ପ୍ରଥମେ ଜଗନ୍ନାଥ ମନ୍ଦିର ଥିଲା, ସେଥିରେ ଚୋଡ଼ଗଙ୍ଗଦେବ ତିନିମୂର୍ତ୍ତିଙ୍କୁ ସ୍ଥାପିତ କରାଇଥିଲେ । ସେହି ମନ୍ଦିର ସମ୍ମୁଖରେ ନାଟ୍ୟଶାଳା ନଥିଲା ତେଣୁ ଚୋଡ଼ଗଙ୍ଗଦେବ ସେଠାରେ ଗୋଟିଏ ଅସ୍ଥାୟୀ ନାଟମଣ୍ଡପ ତିଆରି କରାଇଲେ । ଆଜିର ନୃସିଂହ ମନ୍ଦିର ସମ୍ମୁଖରେ ଯେଉଁ ଅସ୍ଥାୟୀ ନୃତ୍ୟ ମଣ୍ଡପ ହୋଇଥିଲା ସେଠାରେ ଆଜି ଆଧୁନିକ ମୁକ୍ତିମଣ୍ଡପ ନିର୍ମିତ ହୋଇଛି ।

ଏହି ମନ୍ଦିରଗୁଡ଼ିକରେ ଦୈନିକ ଧୂପ ଓ ଶିଙ୍ଗାରବେଶ ପରେ ଦେବଦାସୀଙ୍କ ନୃତ୍ୟ ସଙ୍ଗେ ଭକ୍ତି ସଙ୍ଗୀତ ଗାନ କରାଯାଉଥିଲା । କଳିଙ୍ଗର ପ୍ରାଚୀନ ମନ୍ଦିରଗୁଡ଼ିକରେ ସାନି ସମ୍ପ୍ରଦାୟ ନୃତ୍ୟ ଓ ସଙ୍ଗୀତ କର୍ମରେ ନିଯୁକ୍ତ ହୋଇଥିଲେ । ସେମାନଙ୍କୁ ତେଲେଙ୍ଗୀ ଭାଷାରେ ଗୁଡ଼ିସାନି ବା ଗୁଡ଼ିସେଟ୍ଟି (ମନ୍ଦିର ନର୍ତ୍ତକୀ) କୁହାଯାଉଥିଲା । ଏବେ ମଧ୍ୟ ବଲାଙ୍ଗୀର ଓ ସମ୍ବଲପୁରରେ ସମଲେଶ୍ୱରୀଙ୍କ ମନ୍ଦିରକୁ ସମଲେଇ ଗୁଡ଼ି ଏବଂ ଗୋପାଳ ମନ୍ଦିରକୁ ଗୋପାଲଜୀ ଗୁଡ଼ି କୁହାଯାଏ । ତେଣୁ ଗୁଡ଼ି ମଧ୍ୟ ଏକ ଓଡ଼ିଆ ଶବ୍ଦ । ଏହି ମନ୍ଦିର ନର୍ତ୍ତକୀମାନଙ୍କର ଭରଣପୋଷଣ ପାଇଁ ରାଜାମାନେ ରାଜସ୍ୱ ଆଦାୟର ମଧ୍ୟ ସ୍ୱତ୍ତ୍ୱାଧିକାର ବା ଶାସନ ଦାନ କରୁଥିଲେ ଏବଂ ସେହି ମନ୍ଦିରର ଗାତ୍ରରେ ଶିଳାଲେଖରେ ଏହି ଦାନ କଥା ଉଲ୍ଲେଖ ରହୁଥିଲା, ଯେପିରିକି ଭବିଷ୍ୟତରେ କୌଣସି ଶାସକ ବା ବଳବାନ ପ୍ରଜା ସେହି ଭୂମି ବା ମଧ୍ୟ ସ୍ୱତ୍ତ୍ୱାଧିକାରକୁ ଅକ୍ତିଆର ନକରେ । ଏହି ଦାନକୁ ଈଶ୍ୱରଙ୍କ ମନ୍ଦିରକୁ ଦାନ ବୋଲି ଧରାଯାଉଥିଲା ଏବଂ ବ୍ୟବସ୍ଥା କେହି ଭଙ୍ଗ କଲେ ସେ ରାଜ ଅପରାଧୀ ତଥା ଈଶ୍ୱରଙ୍କଠାରେ ଅପରାଧୀ ଗଣା ଯାଉଥିଲା । ଏହି ଶାସନ ଦାନ ପ୍ରକ୍ରିୟା ରାଜସ୍ୱ ରେକର୍ଡ଼ ପତ୍ରରେ ଲିଖିତ ରହୁଥିଲା । ସାନି ସମ୍ପ୍ରଦାୟର ନର୍ତ୍ତକ ନର୍ତ୍ତକୀ ଭାଇଭଉଣୀ ହୋଇଥିଲେ ମଧ୍ୟ ସେମାନଙ୍କୁ ଗଙ୍ଗବଂଶର ରାଜାମାନେ ପୃଥକ୍ ପୃଥକ୍ ଶାସନ ପ୍ରଦାନ କରିଥିଲେ ।

ଉତ୍କଳରେ ସୋମବଂଶୀୟ ରାଜାମାନଙ୍କ ସମୟରେ ନିର୍ମିତ ହୋଇଥିବା କେତେକ ମନ୍ଦିରରେ 'ଦାରିକା' ଓ 'ବୈଶ୍ୟା'ମାନେ ନୃତ୍ୟ ପରିବେଷଣ ପାଇଁ ନିଯୁକ୍ତ ହୋଇଥିଲେ । ଉଦ୍ୟୋତ କେଶରୀଙ୍କ ରାଜତ୍ୱର ଅଷ୍ଟାଦଶ ବର୍ଷରେ ନିର୍ମିତ ହୋଇଥିବା ବ୍ରହ୍ମେଶ୍ୱର ମନ୍ଦିରର ଶିଳାଲେଖରୁ ଜଣାଯାଏ ଯେ ଉଦ୍ୟୋତ କେଶରୀଙ୍କ ମାତା ତଥା ଯଯାତିଙ୍କ ରାଣୀ କୋଳାବତୀ ଦେବୀ ତିନିଜଣ ରତ୍ନାଳଙ୍କାର ଭୂଷିତା ସ୍ୱାସ୍ଥ୍ୟବତୀ ଅପ୍ସରାଙ୍କ ଭଳି ସୁନ୍ଦରୀ ଦାରିକାଙ୍କୁ ନୃତ୍ୟ ସଂଗୀତ ପରିଚାଳନା ଓ ଆୟୋଜନ ଦାୟିତ୍ୱରେ ବ୍ରହ୍ମେଶ୍ୱର ମନ୍ଦିରରେ ନିଯୁକ୍ତି ଦେଇଥିଲେ ।

ଚୋଡ଼ଗଙ୍ଗଦେବ କିନ୍ତୁ ଏ ପ୍ରଚଳିତ ପ୍ରଥାରେ ପରିବର୍ତ୍ତନ ଆଣିଲେ । ସେ ଶ୍ରୀମନ୍ଦିରରେ ବାରବନିତା ଓ ଦାରିକାମାନଙ୍କୁ ନିଯୁକ୍ତ ନ କରି ସାନି ସମ୍ପ୍ରଦାୟର କେତେକ ପରିବାରଙ୍କୁ ଶ୍ରୀକୂର୍ମ ପାଟକରୁ ଅଣାଇ ପୁରୀଠାରେ ସେମାନଙ୍କ ପାଇଁ ସ୍ଥାୟୀ ବ୍ୟବସ୍ଥା କରିଥିଲେ । କାମାର୍ଣ୍ଣବଦେବଙ୍କ ଅଭିଷେକ ସମୟରେ କୂର୍ମପାଟକରେ ଥିବା ସଂଗୀତ ଓ ଶାସ୍ତ୍ରୀୟ ନୃତ୍ୟ ବିଦ୍ୟାଳୟରୁ ନର୍ତ୍ତକ ଓ ନୃତ୍ୟାଙ୍ଗନାମାନଙ୍କୁ ନିମନ୍ତ୍ରଣ କରାଯାଇଥିଲା । ଶ୍ରୀମନ୍ଦିରରେ ସେମାନେ ଅଭିଷେକ ଉତ୍ସବରେ ନୃତ୍ୟନାଟିକା ଓ ଅନ୍ୟାନ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରିବା ପାଇଁ ଆସିଥିଲେ । ସେହି ଗୁଡ଼ି ସାନିମାନଙ୍କୁ ଦେବଗଣିକା ମଧ୍ୟ କୁହାଯାଉଥିଲା । ସେମାନେ କିନ୍ତୁ 'ଦାରିକା'ଙ୍କ ପରି ବାରବନିତା ବା ବେଶ୍ୟା ବୃତ୍ତି କରୁନଥିଲେ । ସାନି ସମ୍ପ୍ରଦାୟର ଭାଇଭଉଣୀ ସମସ୍ତେ ଏକାଠି ମିଶି ଦେବ ମନ୍ଦିରରେ ନୃତ୍ୟ ସଂଗୀତ ପରିଚାଳନା କରୁଥିଲେ । ଚୋଡ଼ଗଙ୍ଗଦେବ ଶ୍ରୀମନ୍ଦିରରେ ଓଡ଼ିଆ କିମ୍ବା ତେଲେଙ୍ଗା ଭାଷାରେ ସଂଗୀତ ପରିବେଷଣ ନ କରାଇ ସଂସ୍କୃତ ଭାଷାରେ ସଂଗୀତ ଓ ଭଜନ ପରିବେଷଣର ଆଦେଶ ଦେଇଥିଲେ । ଚୋଡ଼ଗଙ୍ଗଦେବ ନିଜ ରାଜଦରବାରରେ ମଧ୍ୟ ପ୍ରାକୃତ ଭାଷା ବଦଳରେ ସଂସ୍କୃତ ଭାଷା ଚଳାଇଥିଲେ ।

ଆଜିର ନୃସିଂହ ମନ୍ଦିର ପ୍ରଥମେ ଜଗନ୍ନାଥ ମନ୍ଦିର ଥିଲା, ସେଥିରେ ଚୋଡ଼ଗଙ୍ଗଦେବ ତିନିମୂର୍ତ୍ତିଙ୍କୁ ସ୍ଥାପିତ କରାଇଥିଲେ । ସେହି ମନ୍ଦିର ସମ୍ମୁଖରେ ନାଟ୍ୟଶାଳା ନଥିଲା ତେଣୁ ଚୋଡ଼ଗଙ୍ଗଦେବ ସେଠାରେ ଗୋଟିଏ ଅସ୍ଥାୟୀ ନାଟମଣ୍ଡପ ତିଆରି କରାଇଲେ । ଆଜିର ନୃସିଂହ ମନ୍ଦିର ସମ୍ମୁଖରେ ଯେଉଁ ଅସ୍ଥାୟୀ ନୃତ୍ୟ ମଣ୍ଡପ ହୋଇଥିଲା ସେଠାରେ ଆଜି ଆଧୁନିକ ମୁକ୍ତିମଣ୍ଡପ ନିର୍ମିତ ହୋଇଛି ।

ଗଙ୍ଗ ରାଜତ୍ୱ ବେଳେ ଦେଶ ବିଦେଶରୁ ଛାତ୍ରଛାତ୍ରୀମାନେ କୂର୍ମପାଟକର ବିଷ୍ଣୁମନ୍ଦିର ଓ ଶ୍ରୀକୂର୍ମେଶ୍ୱରଙ୍କ ମନ୍ଦିରରେ ରହି ଧର୍ମଶାସ୍ତ୍ର, ଦର୍ଶନ ଶାସ୍ତ୍ର ଓ ସଂସ୍କୃତ ସାହିତ୍ୟର ଶିକ୍ଷା ନେଉଥିଲେ । ସେମାନଙ୍କ ମଧ୍ୟରେ ଜୟଦେବ ଜଣେ ଛାତ୍ର ଥିଲେ । ସଂସ୍କୃତ ସାହିତ୍ୟ ଶାସ୍ତ୍ରୀୟ ସଂଗୀତ ଓ ନୃତ୍ୟ ଶିକ୍ଷା କରି ରାଧାକୃଷ୍ଣଙ୍କ ଲୀଳା ଓ ଶୃଙ୍ଗାରରସକୁ ନେଇ ସେ ନୃତ୍ୟ ନାଟିକା ରଚନା ଓ ସଂଯୋଜନା କରୁଥିଲେ । ବୈଦିକ ବ୍ରାହ୍ମଣ କୁଳରେ ଜନ୍ମ ନେଇ ସେ ସାହିତ୍ୟ ଓ ସଙ୍ଗୀତରେ ସୁନାମ କରିଥିଲେ ଏବଂ ଶ୍ରୀକୃଷ୍ଣ ଭକ୍ତିରେ ନିଜକୁ ଉତ୍ସର୍ଗୀକୃତ କରିଥିବାରୁ ସେ 'ସାଧୁ ପ୍ରଧାନ' ଗୁରୁଦେବ ଭାବେ ସମ୍ମାନିତ ହୋଇଥିଲେ । ମଧ୍ୱାଚାର୍ଯ୍ୟ ଓ ନିମ୍ବାର୍କଙ୍କ ବିଶିଷ୍ଟ ଦ୍ୱୈତମତବାଦର ପୃଷ୍ଟପୋଷକ ଭାବେ ସେ ରାଧାକୃଷ୍ଣଙ୍କ ପ୍ରେମ ସମ୍ବଳିତ ଗୀତିନାଟ୍ୟ ରଚନା କରୁଥିଲେ ଏବଂ ନିଜର ଛାତ୍ରଛାତ୍ରୀଙ୍କୁ ନେଇ ଗୋଟିଏ ନାଟ୍ୟଲୀଳା ଦଳ ମଧ୍ୟ ଗଢ଼ିଥିବା ସମ୍ଭବ ।

ବିଖ୍ୟାତ ଐତିହାସିକ ଡଃ ସତ୍ୟ ନାରାୟଣ ରାଜଗୁରୁ ମଧୁକେଶ୍ୱର ମନ୍ଦିର, ସୀମାଚଳର ବରାହ ନୃସିଂହ ମନ୍ଦିର ଏବଂ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିରର ଶିଳାଲେଖ ପଠନ କରି ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ, କାମାର୍ଣ୍ଣବଦେବଙ୍କ ଅଭିଷେକ ଉତ୍ସବରେ ଯୋଗଦେବାକୁ ଚୋଡ଼ଗଙ୍ଗଦେବଙ୍କ ନିମନ୍ତ୍ରଣରେ କୂର୍ମପାଟକରୁ ଯେଉଁ ନାଟ୍ୟଦଳଗୁଡ଼ିକ ପୁରୀ ଆସିଥିଲେ ତା'ର ମୁଖ୍ୟ ଭାବେ ଜୟଦେବ ଶ୍ରୀକ୍ଷେତ୍ର ଆସିଥିବେ । ସେହି ନାଟ୍ୟଦଳର ପ୍ରଶଂସା ଏବଂ ରାଧାକୃଷ୍ଣ ଲୀଳାର ଖ୍ୟାତି ସର୍ବତ୍ର ଜ୍ଞାତ ଥିଲା ଏବଂ କଳିଙ୍ଗରୁ ଆସିଥିବା ସମ୍ରାଟ ଚୋଡ଼ଗଙ୍ଗଦେବ ଜୟଦେବଙ୍କ ନାଟ୍ୟଦଳକୁ ନିମନ୍ତ୍ରଣ କରିଥିବା ନିତାନ୍ତ ସ୍ୱାଭାବିକ ଓ ଯୁକ୍ତିଯୁକ୍ତ ।

ଏ ଅନୁମାନ ମୂଳରେ ଅଛି ଚୋଡ଼ଗଙ୍ଗଦେବଙ୍କ ଦ୍ୱିତୀୟ ପୁତ୍ର ବୀର ରାଘବ ଦେବଙ୍କ ରାଜତ୍ୱ କାଳ (ଖ୍ରୀ:୧୧୫୬-ଖ୍ରୀ:୧୧୭୦)ରେ ଲିଙ୍ଗରାଜ ମନ୍ଦିର ଭିତ୍ତିରେ ଥିବା ଶିଳାଲେଖ ଯାହାକି 'ସ୍ୱସ୍ତି ରାଘବଦେବସ୍ୟ...' ନାମରେ ଖ୍ୟାତ । ଏହି ଶିଳାଲେଖର ଅର୍ଥ ଡଃ ରାଜଗୁରୁ ନିମ୍ନମତେ ବ୍ୟାଖ୍ୟା କରିଛନ୍ତି ।

'ଶ୍ରୀ ରାଘବଦେବଙ୍କର ରାଜତ୍ୱକାଳରେ ଶ୍ରୀ କୀର୍ତ୍ତିବାସେଶ୍ୱର (ଶ୍ରୀଲିଙ୍ଗରାଜ)ଙ୍କ ପ୍ରୀତି ସଂପାଦନ ପାଇଁ ମେଡ଼ମ ଦେବୀ ଏବଂ ତାଙ୍କ ମାତା ଓ ପିତା କୋମିନାୟକ ସମସ୍ତେ ମିଶି ପ୍ରତ୍ୟେକ ଗୋଟିଏ ଲେଖାଏଁ ଅଖଣ୍ଡଦୀପ ଦାନ କରିଥିଲେ । ସେତେବେଳେ କୂର୍ମପାଟକର ସୁପ୍ରସିଦ୍ଧ (ପ୍ରବର) ସାଧୁ ପ୍ରଧାନ ଜୟଦେବଙ୍କଠାରୁ କ୍ରୟ କରି ବାହେଡ଼ାଖଣ୍ଡ କ୍ଷେତ୍ରର ସମସ୍ତ ସ୍ୱତ୍ୱ କୀର୍ତ୍ତିବାସେଶ୍ୱରଙ୍କୁ ଦାନ କରାଗଲା ।'

ଏହି ଶିଳାଲେଖର ଗୋଟିଏ ଭୁଲ ବ୍ୟାଖ୍ୟା କରି ଆଗରୁ କୁହାଯାଉଥିଲା ଯେ ମେଡ଼ମଦେବୀ ଓ ତାଙ୍କ ମାତା ଓ ପିତା ଅଖଣ୍ଡଦୀପ ପାଇଁ ବାହେଡ଼ାଖଣ୍ଡର ମଧତ୍ୱାଧିକାର କୀର୍ତ୍ତିବାସେଶ୍ୱରଙ୍କୁ ଦାନ କଲାବେଳେ କୂର୍ମପାଟକ ପ୍ରବର ସାଧୁ ପ୍ରଧାନ ଜୟଦେବ ସେଠାରେ ଉପସ୍ଥିତ ଥିଲେ । ଆଉ କେତେଜଣ ସାଧୁ ପ୍ରଧାନ ଜୟଦେବଙ୍କୁ ଜଣେ ଧନୀ ବ୍ୟବସାୟୀ ବୋଲି ମଧ୍ୟ କହିଥିଲେ, ଯାହାଙ୍କୁ ଜମିବାଡ଼ି ବିକ୍ରୀ ବେଳେ ସାକ୍ଷୀ କରାଯାଉଥିଲା । ପ୍ରକୃତରେ କିନ୍ତୁ ବାହେଡ଼ାଖଣ୍ଡର ସ୍ୱତ୍ୱ ଜୟଦେବଙ୍କଠାରୁ କିଣାଯାଇ ଲିଙ୍ଗରାଜଙ୍କୁ ଦିଆଯାଇଥିଲା । ଅଖଣ୍ଡଦୀପ ଦାନ ଏବଂ ତା'ପାଇଁ ଅର୍ଥ କେଉଁ ସୂତ୍ରରୁ ଆସିବ ଏକଥା ମନ୍ଦିର ଗାତ୍ରରେ ଲେଖାଇବା କଳିଙ୍ଗର ଏକ ପ୍ରାଚୀନ ପ୍ରଥା ଥିଲା । ଜୟଦେବଙ୍କର କୂର୍ମପାଟକରେ ପ୍ରଧାନ ଆଚାର୍ଯ୍ୟ ଓ ବୈଷ୍ଣବ ସାଧୁ ଭାବରେ ଯେଉଁ ସୁନାମ ଥିଲା ସେଥିପାଇଁ ତାଙ୍କୁ କୂର୍ମପାଟକ ପ୍ରବର କୁହାଯାଇଛି । ଗଙ୍ଗବଂଶର ରାଜାମାନଙ୍କଠାରୁ ସେ ଦାନ ସୂତ୍ରରେ ବାହେଡ଼ାଖଣ୍ଡ ଅଞ୍ଚଳ ପାଇଥିବେ ଏବଂ ତାଙ୍କର ଗୁଡ଼ିସାନି ଛାତ୍ରୀ ଓ ଛାତ୍ରୀଙ୍କ କନ୍ୟାଙ୍କୁ ସେ ସ୍ୱତ୍ୱକୁ ବିକ୍ରୟ କଲେ ଯାହାକି ସେମାନେ ଲିଙ୍ଗରାଜଙ୍କୁ ଦାନ କଲେ, ଯେଉଁ ଅର୍ଥରୁ ଅଖଣ୍ଡଦୀପ ବସିବାର ଖର୍ଚ୍ଚ ବହନ କରାଯିବ ।

ମେଡ଼ମ୍ ଦେବୀଙ୍କ ପିତା କୋମି ନାୟକ ମୁଖଲିଙ୍ଗମ୍‌ଠାରେ ମଧୁକୋବର ମନ୍ଦିରରେ ୧୧୧୩ ଖ୍ରୀଷ୍ଟାବ୍ଦରେ ଏକ ଅଖଣ୍ଡଦୀପ ଦାନ କରିଥିଲେ ଏବଂ ଏହା ଏକ ଶିଳାଲେଖରେ ସେହି ମନ୍ଦିରରେ ଲିପିବଦ୍ଧ ହୋଇଛି । ବେନମ ପେଗଡ଼ ଓ ଗୁଡ଼ିସାନି ଏରକମ୍ମାଙ୍କ କନ୍ୟା ଥିଲେ ନଙ୍ଗମା ଦେବୀ । ସେ ନିଜେ ଜଣେ ଗୁଡ଼ିସାନି ଅର୍ଥାତ୍ ମନ୍ଦିର ନର୍ତ୍ତକୀ । ସେ ବିବାହ କରିଥିଲେ ପସାଇତ ବା ଦେବ ସେବକ କୋମି ନାୟକଙ୍କୁ । କୋମି ନାୟକ ଓ ନଙ୍ଗମାଙ୍କ ସୁଯୋଗ୍ୟା କନ୍ୟା ଥିଲେ ମେଡ଼ମ୍ ଦେବୀ ।

୧୧୨୮ ଖ୍ରୀଷ୍ଟାବ୍ଦରେ କୋମି ନାୟକ ଓ ନଙ୍ଗମା ମିଶି ମଧୁକେଶ୍ୱର ମନ୍ଦିରରେ ଆଉ ଏକ ଅଖଣ୍ଡଦୀପ ପ୍ରଦାନ କରିଥିଲେ । ଏଥିରେ ମଧ୍ୟ ନଙ୍ଗମାଙ୍କ ମା' ଏରକମ୍ମାଙ୍କ ନାମ ଉଲ୍ଲେଖ ଅଛି । ମେଡ଼ମ୍‌ଦେବୀଙ୍କ ମାତା ନଙ୍ଗମା ଦେବୀଙ୍କୁ କୂର୍ମପାଟକରେ ସଂଗୀତ ଓ ନୃତ୍ୟ ଶିକ୍ଷା ଦେଇଥିବା ଜୟଦେବ ସେଠାରେ ସାଧୁ ପ୍ରଦାନ ଉପାଧିରେ ଭୂଷିତ ଥିଲେ ଏବଂ ତାଙ୍କୁ କୂର୍ମପାଟକର ଜଣେ ମାନ୍ୟଗଣ୍ୟ ନାଗରିକ ଭାବେ ଶିଳା ଫଳକରେ କୂର୍ମପାଟକ ପ୍ରବର ବୋଲି ବର୍ଣ୍ଣିତ କରାଯାଇଛି । କୋମି ନାୟକଙ୍କ ପରିବାରର ଗୁରୁଭକ୍ତି ଏଠାରେ ଲକ୍ଷ୍ୟ କରିବା କଥା ଭବିଷ୍ୟତ ବଂଶଧରମାନଙ୍କ ପାଇଁ ଲିଙ୍ଗରାଜ ମନ୍ଦିରରେ ଚିରକାଳକୁ ଲିପିବଦ୍ଧ ରହିଲା ଯେ ବାହେଡ଼ାଖଣ୍ଡର ସମସ୍ତ ଅଞ୍ଚଳ ଉପରେ ସାଧୁପ୍ରଧାନ ଜୟଦେବଙ୍କର କିମ୍ବା ତାଙ୍କଠାରୁ ସ୍ୱତ୍ତ୍ୱ କ୍ରୟ କରିଥିବା କୋମି ନାୟକଙ୍କ ପରିବାରର କୌଣସି ଅଧିକାର ଆଉ ରହିଲା ନାହିଁ । ଦାନସୂତ୍ରରେ ପ୍ରଭୁ ଲିଙ୍ଗରାଜ ବିଜେ ଭୁବନେଶ୍ୱର ସେ ସମ୍ପତ୍ତିର ଅଧିକାରୀ ହେଲେ ଏବଂ ଏହି ସମ୍ପତ୍ତିରୁ ମିଳିବା ଅର୍ଥରେ ଅଖଣ୍ଡଦୀପ ଜଳିବ ଓ ଅନ୍ୟାନ୍ୟ ମନ୍ଦିର ନୀତି ଚଳିବ । ଲିଙ୍ଗରାଜ ମହାପ୍ରଭୁ ସେହି ଦିନଠାରୁ ବାହେଡ଼ାଖଣ୍ଡ କ୍ଷେତ୍ରର ମଧସ୍ୱତ୍ୱାଧିକାରୀ ହେଲେ ।

ଜୟଦେବ କୂର୍ମପାଟକକୁ ଛାତ୍ର ହିସାବରେ ଯାଇ ସେଠାରେ ଶାସ୍ତ୍ରୀୟ ସଂଗୀତ ଓ ନୃତ୍ୟକଳା ଶିକ୍ଷା କରିନଥିଲେ ବିଭିନ୍ନ ରାଗରେ ସଂସ୍କୃତରେ ଗୀତଗୋବିନ୍ଦ ରଚନା କରିବା ତାଙ୍କ ପକ୍ଷେ ସମ୍ଭବ ହୋଇନଥାନ୍ତା । ଡଃ ରାଜଗୁରୁଙ୍କ ଭାଷାରେ କଳିଙ୍ଗ ସଂଗୀତ ପଦ୍ଧତିର କ୍ରମବିକାଶ ହିଁ ଜୟଦେବଙ୍କ ଗୀତଗୋବିନ୍ଦରେ ଆତ୍ମପ୍ରକାଶ କରିଛି । ଡଃ ସତ୍ୟନାରାୟଣ ରାଜଗୁରୁ ଯଦି ମୁଖଲିଙ୍ଗମ୍‌ରେ ମଧୁକେଶ୍ୱର ମନ୍ଦିରରେ ଥିବା ସମସ୍ତ ଶିଳା ପ୍ରସ୍ତର ଲେଖ ପାଠକରି ତାହାର ଠିକ୍ ବ୍ୟାଖ୍ୟା କରିନଥାନ୍ତେ ତେବେ କୂର୍ମପାଟକ ପ୍ରବର ସାଧୁ ପ୍ରଧାନ ଜୟଦେବ ହିଁ 'ଗୀତଗୋବିନ୍ଦ'ର ରଚୟିତା ମହାକବି ଜୟଦେବ, ଏକଥା ନିର୍ଭୁଲ ଭାବେ ପ୍ରମାଣ କରାଯାଇ ପାରିନଥାନ୍ତା । କୋମି ନାୟକ ପରିବାରଙ୍କ ସହ ଜୟଦେବଙ୍କ ସମ୍ପର୍କ ଗୁରୁ ଓ ଛାତ୍ରୀର ସମ୍ପର୍କ । ଶ୍ରୀକୂର୍ମ ମନ୍ଦିରର ଇତିହାସ ଓ ଗଙ୍ଗବଂଶୀୟ ରାଜା ବଜ୍ରହସ୍ତଦେବ ଦେଇଥିବା ତାମ୍ର ଫଳକରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ କୂର୍ମପାଟକରେ ଏଭଳି ଏକ ନୃତ୍ୟ, ସଂଗୀତ ଓ ଶାସ୍ତ୍ର ଶିକ୍ଷା କେନ୍ଦ୍ର ଥିଲା ।

କଳିଙ୍ଗରେ ଅପୂର୍ବ ନଟବଂଶ ନାମରେ ଏକ ନୃତ୍ୟ ବିଶାରଦ ଜାତି ଖ୍ରୀ: ସପ୍ତମ ଶତାବ୍ଦୀରେ ବା ତା' ପୂର୍ବରୁ ସୃଷ୍ଟି ହୋଇଥିଲା ଯାହା ଖ୍ରୀ:୬୮୧ରେ, ଖ୍ରୀ:୬୮୨ରେ ଏବଂ ଖ୍ରୀ:୬୯୦ରେ ପ୍ରଦତ୍ତ ତିନୋଟି ତାମ୍ର ଶାସନରୁ ଜଣାଯାଏ । ଏହି ନଟବଂଶକୁ ପରବର୍ତ୍ତୀ ସମୟରେ ସାନି ସମ୍ପ୍ରଦାୟ କୁହାଯାଉଥିଲା । ଜୟଦେବଙ୍କ ରଚିତ ଗୀତଗୋବିନ୍ଦରେ କଳିଙ୍ଗ ସଂଗୀତର ଅଧିକାଂଶ ରାଗ ବ୍ୟବହୃତ ହୋଇଛି ଏବଂ ଏହା ଏକ ଲଳିତ ପଦାବଳୀଯୁକ୍ତ ମହାନ୍ ଗୀତନାଟ୍ୟ ତଥା ଦୃଶ୍ୟକାବ୍ୟରେ ପରିଣତ ହୋଇଛି । ଗୀତଗୋବିନ୍ଦ ସଂଗୀତ ଓ ନୃତ୍ୟଭିତ୍ତିକ । ଏହା ଏକ ରାଧାକୃଷ୍ଣ ଭକ୍ତି ବିଷୟକ ଲୀଳା ତଥା ନୃତ୍ୟ ନାଟିକା । ସେହି ସଂଗୀତକୁ କଳିଙ୍ଗର ଦେବଗଣିକାମାନେ ଶ୍ରୀକ୍ଷେତ୍ରକୁ ସମ୍ରାଟ ଚୋଡ଼ଗଙ୍ଗଦେବଙ୍କ ନିମନ୍ତ୍ରଣ କ୍ରମେ ଆସି ଉତ୍କଳରେ ପ୍ରଚଳିତ କରିଥିଲେ ।

ବୈଷ୍ଣବ କବି ମାଧବ ପଟ୍ଟନାୟକ ରାସନୃତ୍ୟ ବା ରାସଲୀଳାର ଉତ୍ପତ୍ତି ବିଷୟ ୧୫୩୫ ଖ୍ରୀ:ରେ ସ୍ୱଲିଖିତ 'ବୈଷ୍ଣବ ଲୀଳାମୃତ' ପୁସ୍ତକରେ ନିମ୍ନମତେ ବର୍ଣ୍ଣନା କରିଛନ୍ତି ।

ଗଙ୍ଗବଂଶୀୟ ସମ୍ରାଟ ଚୋଡ଼ଗଙ୍ଗଦେବ କଳିଙ୍ଗରୁ ଆସି ଉତ୍କଳଖଣ୍ଡ ଅଧିକାର କରିଥିଲେ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ କଳିଙ୍ଗ, କୋଶଳ, ତୋଷାଳୀ, କଙ୍ଗୋଦ ଓ ଉତ୍କଳ ଏସବୁ ଆଜିର ଓଡ଼ିଶାର ବିଭିନ୍ନ ଅଂଶକୁ ଇତିହାସରେ ବିଭିନ୍ନ ସମୟରେ କୁହାଯାଉଥିଲା କଳିଙ୍ଗ ନାମରେ ପରିଚିତ ଅଂଶର କେତେକ ଅଂଶ ଆଜି ଆନ୍ଧ୍ରପ୍ରଦେଶରେ, କୋଶଳ ନାମରେ ପରିଚିତ ପ୍ରାନ୍ତରେ ଅନେକ ଅଂଶ ଆଜି ଛତ୍ରିଶଗଡ଼ ରାଜ୍ୟରେ, ଉତ୍କଳ ନାମରେ ପରିଚିତ ପ୍ରାନ୍ତର ଅନେକ ଅଂଶ ଆଜି ଝାଡ଼ଖଣ୍ଡ ଓ ପଶ୍ଚିମବଙ୍ଗ ରାଜ୍ୟରେ ଅଛି । ତୋଷାଳୀ ଓ କଙ୍ଗୋଦଖଣ୍ଡ ନାମରେ ପରିଚିତ ଅଂଶ ହୁଏତ ସମ୍ପୂର୍ଣ୍ଣ ଭାବେ ଆଜିର ଓଡ଼ିଶାରେ ଅଛି । ଜଗନ୍ନାଥଙ୍କର ଏକ ମନ୍ଦିର ପୂର୍ବରୁ ପୁରୀରେ ଥିଲା, ତାହା ଆକାରରେ କ୍ଷୁଦ୍ର ଥିଲା ଏବଂ ଜରାଜୀର୍ଣ୍ଣ ଅବସ୍ଥାକୁ ଆସିଥିଲା । ଏହି ଜୀର୍ଣ୍ଣ ଦେଉଳର ସଂସ୍କାର କରି ଚୋଡ଼ଗଙ୍ଗଦେବ ଆଉ ଏକ ନୂତନ ମନ୍ଦିର ନିର୍ମାଣର ବନ୍ଦୋବସ୍ତ କଲେ । ବର୍ତ୍ତମାନର ଶ୍ରୀମନ୍ଦିରର କେବଳ ଗର୍ଭଗୃହ ଅଂଶଟି ଓ ତତ୍‌ସଂଲଗ୍ନ ଜଗମୋହନର କିଛି ଅଂଶ ସେ ନିର୍ମାଣ କରିଥିଲେ । ଏହି ଗର୍ଭଗୃହକୁ ବିମାନ କୁହାଯାଏ ଓ ପ୍ରବେଶ ଦ୍ୱାରକୁ ଜଗମୋହନ କୁହାଯାଏ । ବହୁ ଧନ ବ୍ୟୟରେ ଏ ଦୁଇଟି କାର୍ଯ୍ୟ ସମ୍ପାଦିତ ହୋଇଥିଲା ।

ମନ୍ଦିର ନିର୍ମାଣ ବେଳକୁ ଚୋଡ଼ଗଙ୍ଗଦେବଙ୍କର ବାର୍ଦ୍ଧକ୍ୟ ଅବସ୍ଥା ଆସିଥିଲା । ଏହି ଗର୍ଭଗୃହ ପ୍ରତିଷ୍ଠାବେଳେ ଚୋଡ଼ଗଙ୍ଗଦେବ ନିଜ ଜ୍ୟେଷ୍ଠପୁତ୍ର ଯୁବରାଜ କାମାର୍ଣ୍ଣବଦେବଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କଲେ । ଗର୍ଭଗୃହ ପ୍ରତିଷ୍ଠା ଓ ଯୁବରାଜଙ୍କ ଅଭିଷେକ ଏଇ ଦୁଇଟି ଉତ୍ସବ ବହୁଆଡ଼ମ୍ବରରେ ଏକ ସଙ୍ଗରେ ଅନୁଷ୍ଠିତ ହୋଇଥିଲା । ଏହି ଉତ୍ସବରେ ପ୍ରଥମ ଥର ପାଇଁ ଓଡ଼ିଶାରେ ହରିଲୀଳା ନୃତ୍ୟନାଟିକାର ପ୍ରଚଳନ ହୋଇଥିଲା ।

ହରିଲୀଳା ଗାନ କରିବା ପାଇଁ ଚୋଡ଼ଗଙ୍ଗଦେବ ନାଚୁଣୀ ମାହାରୀମାନଙ୍କୁ ଦକ୍ଷିଣରୁ ଅଣାଇ ନିଯୁକ୍ତି ଦେଲେ । ଚୋଡ଼ଗଙ୍ଗଦେବ ଗୋଦାବରୀ ନଦୀ କୂଳରୁ ମୃର୍ତ୍ତିକା ଅଣାଇ ସେଥିରେ ମୃଦଙ୍ଗ ନିର୍ମାଣ କରାଇଲେ । ସେଇ ମୃଦଙ୍ଗ ବ୍ୟବହାର କରାଯାଇ ଜଗନ୍ନାଥ ମନ୍ଦିରରେ ନାମ ସଂକୀର୍ତ୍ତନ ପ୍ରଚଳନ କରାଗଲା । ମୃଦଙ୍ଗ ସାଙ୍ଗକୁ ଝାଞ୍ଜ, ଗିନି ଓ କରତାଳ ମିଶାଇ ସଂକୀର୍ତ୍ତନ କରାହେଲା । ଗର୍ଭଗୃହ ପ୍ରତିଷ୍ଠା ଓ କାମାର୍ଣ୍ଣବଦେବଙ୍କ ରାଜ୍ୟାଭିଷେକରେ ଅନେକ କୀର୍ତ୍ତନର ଆୟୋଜନ କରାଯାଇଥିଲା । ନାଚୁଣୀ ମାହାରିମାନେ ହରିଲୀଳା ନାଟକ ଶ୍ରୀମନ୍ଦିରର ନାଟମଣ୍ଡପରେ ପ୍ରଦର୍ଶନ କଲେ । ଦେବଦାସୀଙ୍କ ନୃତ୍ୟ ନୂତନ ମନ୍ଦିରର ଗର୍ଭଗୃହରେ ଅନୁଷ୍ଠିତ ହୋଇଥିଲା । ହରିଙ୍କ ସ୍ତୁତି ସହିତ ଦେବଦାସୀଙ୍କ ନୃତ୍ୟ ମୃଦଙ୍ଗ, ଝାଞ୍ଜ ଓ ଗିନିର ସଂଗୀତ ଏକ ଅପୂର୍ବ ମୂର୍ଚ୍ଛନା ସୃଷ୍ଟି କଲା । ମାହାରୀମାନଙ୍କର ଏଇ ନୃତ୍ୟକୁ ହିଁ ରାହାସ ନୃତ୍ୟ ଆଖ୍ୟା ଦିଆଗଲା । ଚୋଡ଼ଗଙ୍ଗଦେବ ଏ ଉତ୍ସବ ଦୁଇଟିରୁ ଅପୂର୍ବ ସନ୍ତୋଷ ଲାଭ କଲେ । ଏଇ ନାଚୁଣୀ ମାହାରିମାନଙ୍କୁ ଦେବଦାସୀ କୁହାଯାଉଥିଲା । ଶ୍ରୀକୂର୍ମ ମନ୍ଦିରରେ ଗଙ୍ଗବଂଶୀୟ ରାଜାମାନେ ଦକ୍ଷିଣ ଭାରତରୁ ଆଣି ଏ ପ୍ରଥା ପ୍ରଚଳନ କରାଇଥିଲେ ।

ଏ ସଂକୀର୍ତ୍ତନ ବ୍ୟତୀତ ଆଉ ଏକ ରାହାସ ନୃତ୍ୟ କଥା ମାଧବ ପଟ୍ଟନାୟକ ଉଲ୍ଲେଖ କରିଛନ୍ତି ।

'ଏଥୁ ଅନ୍ତରେ ଗୁଣି ଜନେ ।। ଗୀତଗୋବିନ୍ଦ ପରିମାଣେ ।।
ବିପ୍ର ସେ ଜୟଦେବ ନାମ ।। କ୍ଷେତ୍ରବରକୁ ଆଗମନ ।।
କେନ୍ଦୁଲି ଶାସନ ତା' ଗ୍ରାମ ।। ପ୍ରାଚୀନଦୀର ତଟ ପୁଣ ।।
ନିଆଳି ମାଧବ ସମୀପେ ।। ଭଗତି କଲା ନାନା ରୂପେ ।।

ଶାସ୍ତ୍ର ପୁରାଣେ ବିଚକ୍ଷଣ ॥ କବିତ୍ୱ ମାର୍ଗେ ତା'ର ମନ ॥
ଗୀତ ସେ ରଚିବି ବୋଇଲା ॥ କ୍ଷେତ୍ରବାସକୁ ମନ ଦେଲା ॥
ଶ୍ରୀଜଗନ୍ନାଥର ସମୀପେ ॥ ଶୁଦ୍ଧ ସାତ୍ତ୍ୱିକ ମତିଭାବେ ॥
ରଚିଲା ଶ୍ରୀଗୀତଗୋବିନ୍ଦ ॥ ଲଭିଲା ପରମ ଆନନ୍ଦ ॥
ଶ୍ରୀରାଧା ମାଧବର ଲୀଳା ॥ ମଧୁର ସ୍ୱରରେ ଗାଇଲା ॥
ପତ୍ନୀ ତାହାର ପଦ୍ମାବତୀ ॥ ଗୀତର ତାଳେ ସେ ନୃତ୍ୟନ୍ତି ॥
ରାହାସ ନୃତ୍ୟ କଳା ଜାଣି ॥ ନାଟ ସେ କଳାକ ନାଚୁଣୀ ॥
ଭଗତେ ଧନ୍ୟ ଧନ୍ୟ କଲେ ॥ ଭଗତି ଭାବେ ଭୋଳ ହେଲେ ॥'

ତୃତୀୟ ଅନଙ୍ଗ ଭୀମଦେବ (ଖ୍ରୀ:୧୨୧୧-ଖ୍ରୀ:୧୨୩୮)ଙ୍କ ସମୟରେ ଗୀତଗୋବିନ୍ଦର ନାଟ ସେବା ପ୍ରଥମ ଥର ପାଇଁ ମନ୍ଦିରରେ ପ୍ରତ୍ୟହ ଏକ ନିର୍ଦ୍ଦିଷ୍ଟ ସେବା ରୂପେ ପ୍ରବର୍ତ୍ତନ କଲେ । ପୂର୍ବରୁ ସମ୍ରାଟ ରାଜାରାଜଦେବ ମନ୍ଦିରରେ ଏହି ସେବା ପାଇଁ ଅନୁମତି ଦେଇଥିଲେ ଏବଂ ଶ୍ରୀମନ୍ଦିରରେ ଏହି ଗୀତ ବୋଲା ହେଉଥିଲା । ତୃତୀୟ ଅନଙ୍ଗଭୀତଦେବଙ୍କ ସମୟକୁ ଗୀତଗୋବିନ୍ଦ ଶ୍ରୀଜଗନ୍ନାଥଙ୍କ ଅତି ପ୍ରିୟ ବୋଲି ସମସ୍ତଙ୍କ ଧାରଣା ହୋଇଥିଲା । ତେଣୁ ଗଜପତି ରାଜା ଶ୍ରୀଜଗନ୍ନାଥଙ୍କୁ କେନ୍ଦୁଲୀ ଶାଢ଼ୀ ଯୋଗାଇବା ପାଇଁ ନିଷ୍ପତ୍ତି ନେଲେ ଏବଂ ଏ ସେବା ଏ ପର୍ଯ୍ୟନ୍ତ ରହିଛି । ମାଧବ ପଟ୍ଟନାୟକ ଏହାଙ୍କୁ କେବଳ ଭୀମଦେବ ନାମରେ ଉଲ୍ଲେଖ କରିଛନ୍ତି । ତୃତୀୟ ଅନଙ୍ଗଭୀମଦେବ ନାଟମନ୍ଦିର ନିର୍ମାଣ କରି ବିମାନ ଓ ଜଗମୋହନ ସହ ଏହାକୁ ମିଶାଇଲେ । ରାହାସ ନୃତ୍ୟରେ ଗୀତଗୋବିନ୍ଦ ନୃତ୍ୟ ସାମିଲ ହେଲା ।

ମାଧବ ପଟ୍ଟନାୟକଙ୍କ ବର୍ଣ୍ଣନା ଅନୁଯାୟୀ ଗଜପତି ପ୍ରତାପରୁଦ୍ରଦେବଙ୍କ ରାଜତ୍ୱବେଳେ ବଟ ଗଣେଶ ନିକଟରେ ଏକ ରାସସ୍ଥଳୀ ନିର୍ମିତ ହୋଇଥିଲା । ଏହି ରାସମଣ୍ଡପକୁ ଜଗନ୍ନାଥ ଦାସଙ୍କ ନିର୍ଦ୍ଦେଶ ଅନୁସାରେ କହ୍ନେଇ ଖୁଣ୍ଟିଆ ନିର୍ମାଣ କରିଥିଲେ । ସ୍ୱାମୀ ଜଗନ୍ନାଥ ଦାସ ରାହାସ ନୃତ୍ୟ ଶିକ୍ଷା ଦେଉଥିଲେ । ବଳରାମ, ଅଚ୍ୟୁତ, ଅନନ୍ତ, ଯଶୋବନ୍ତ, ଆଦି ପଞ୍ଚସଖା ଓ ଗୋପାଳଗୁରୁ ଓ କହ୍ନେଇ ଖୁଣ୍ଟିଆଙ୍କ ଭଳି ଭକ୍ତମାନେ ଏଠାରେ ସବୁଦିନ ନାମ ସଂକୀର୍ତ୍ତନ କରୁଥିଲେ । ଏଠାରେ ପ୍ରତ୍ୟହ ପୁରାଣପାଠ ହେଉଥିଲା ଏବଂ ଜଗନ୍ନାଥ ଦାସ ଏଠାରେ ଓଡ଼ିଆ ଭାଗବତ ରଚନା କରି ଲୋକଙ୍କୁ ଶୁଣାଉଥିଲେ ।

ଶ୍ରୀକୃଷ୍ଣଙ୍କର ଗୋପୀମାନଙ୍କ ସଙ୍ଗେ ନୃତ୍ୟକୁ ଶ୍ରୀମଦ୍ ଭାଗବତରେ ରାହାସ ନୃତ୍ୟ ରୂପେ ବର୍ଣ୍ଣନା କରାଯାଇଛି । ନିତ୍ୟଧାମ ନୀଳାଚଳରେ ରାସନୃତ୍ୟର ପ୍ରଚଳନ ହୋଇଥିଲା ଚୋଡ଼ଗଙ୍ଗଦେବଙ୍କ ସମୟରୁ । ରାହାସ ଶବ୍ଦର ଅନ୍ୟ ଏକ ଅର୍ଥ ମଧ୍ୟ ନାମ ସଂକୀର୍ତ୍ତନ । ଜଗନ୍ନାଥ ଦାସ ଓ ଶ୍ରୀଚୈତନ୍ୟଙ୍କଠାରେ ରାଧାକୃଷ୍ଣତତ୍ତ୍ୱର ମିଳନ ହୋଇଥିଲା । ତେଣୁ ଜଗନ୍ନାଥ ଦାସ ନାମ ସଂକୀର୍ତ୍ତନକୁ ରାହାସ ଆଖ୍ୟା ଦେଲେ । ଏଥିରେ ଜପ, ତପ, ଭକ୍ତି ଓ ଅନୁରାଗ ଏ ସମସ୍ତର ସମାହାର ହେଲା ।

ଜୟଦେବଙ୍କ ଗୀତଗୋବିନ୍ଦ ଓ ବିଲ୍ୱମଙ୍ଗଳଙ୍କର କର୍ଣ୍ଣାମୃତର ପଦାବଳୀକୁ ସଂକୀର୍ତ୍ତନରେ ବୋଲା ହେଉଥିଲା ।

ଏହି ମଣ୍ଡପ ମଧ୍ୟରେ ଏକ କ୍ଷୁଦ୍ର ସିଂହାସନ ଥିଲା ଏବଂ ସେହି ସିଂହାସନ ଉପରେ ରାଧାକୃଷ୍ଣ ମୂର୍ତ୍ତି ରଖାଯାଉଥିଲା । ଚତୁଃପାର୍ଶ୍ୱରେ ଅଷ୍ଟସଖୀଙ୍କର କ୍ଷୁଦ୍ର କ୍ଷୁଦ୍ର ମୂର୍ତ୍ତି ରଖାଯାଉଥିଲା । ଏହି ମଣ୍ଡପରେ ସିଂହାସନର ଚାରିପଟେ ବୁଲି ବୁଲି ସଂକୀର୍ତ୍ତନ କରୁଥିଲେ ପଞ୍ଚସଖା ଗୋଷ୍ଠୀ । ଶ୍ରୀଚୈତନ୍ୟ ପୁରୀକୁ ଆସିବାର ଅନେକ ବର୍ଷ ତଳୁ ଏହି ସଂକୀର୍ତ୍ତନ ବା ରାସନୃତ୍ୟ ଶ୍ରୀମନ୍ଦିରରେ ହେଉଥିଲା । ପରେ ଏମାନେ ଈଷ୍ଟଗୋଷ୍ଠୀ ନାମରେ ପରିଚିତ ହେଲେ ।

ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭ ବେଳକୁ ଓଡ଼ିଶାରେ ଆମେ ରାସ ବା ରାହାସର ଚାରିଗୋଟି ଅର୍ଥ ବା ବ୍ୟାଖ୍ୟା ପାଇଥାଉ । ଶ୍ରୀମଦ୍ ଭାଗବତ ଅନୁଯାୟୀ ରାହାସ ଲୀଳା ହେଲା ଶ୍ରୀକୃଷ୍ଣ ଓ ଗୋପୀମାନଙ୍କ ବୃତ୍ତାକାରରେ ମିଳିତ ନୃତ୍ୟ । ଚୋଡ଼ଗଙ୍ଗଦେବଙ୍କର ଶ୍ରୀମନ୍ଦିର ସଂସ୍କାର ପରେ ମନ୍ଦିର ମଧ୍ୟରେ ମାହାରୀ ତଥା ଦେବଦାସୀମାନଙ୍କର ହରିଲୀଳା ନୃତ୍ୟକୁ ମଧ୍ୟ ରାହାସ ଆଖ୍ୟା ଦିଆଯାଇଥିଲା । ଜୟଦେବଙ୍କର ଗୀତଗୋବିନ୍ଦ ରଚନା କାଳରେ ପଦ୍ମାବତୀଙ୍କର ଶ୍ରୀମନ୍ଦିରରେ ନୃତ୍ୟ ଓ ତତ୍‌ପରେ ଶ୍ରୀମନ୍ଦିରରେ ପ୍ରଚଳିତ ହୋଇଥିବା ଗୀତଗୋବିନ୍ଦ ନାଟ ସେବା ହେଲା ରାହାସ ନୃତ୍ୟ । ତତ୍‌ପରେ ଜଗନ୍ନାଥ ଦାସଙ୍କ ନିର୍ଦ୍ଦେଶରେ କହ୍ନେଇ ଖୁଣ୍ଟିଆଙ୍କ ନିର୍ମିତ ରାହାସ ମଣ୍ଡପରେ ପଞ୍ଚସଖାଙ୍କର, ବିଲ୍ୱମଙ୍ଗଳ ରଚିତ କର୍ଣ୍ଣାମୃତ ଓ ଜୟଦେବଙ୍କର ଗୀତଗୋବିନ୍ଦର ପଦାବଳୀକୁ ରାଧାକୃଷ୍ଣଙ୍କ ମୂର୍ତ୍ତି ଚାରିପଟେ ଗାଇ ଗିନି ଓ ଖୋଳ ବଜାଇ ନାଚି ନାଚି ବୁଲିବାକୁ ରାହାସ କୁହାଗଲା ।

ଏବେ ମଧ୍ୟ ଓଡ଼ିଶାରେ କାର୍ତ୍ତିକ ପୂର୍ଣ୍ଣିମାର ଅନ୍ୟ ନାମ ରାହାସ ପୂର୍ଣ୍ଣିମା କାରଣ ବୃନ୍ଦାବନରେ ଶରତ ରାସର ପ୍ରଚଳନ ଥିଲା । ଜୟଦେବଙ୍କ ଗୀତଗୋବିନ୍ଦ ରଚନା ବେଳକୁ ଓଡ଼ିଶାରେ ବସନ୍ତରାସର ପ୍ରଚଳନ ହୋଇଥିଲା । ତେଣୁ ଗୀତଗୋବିନ୍ଦରେ ବସନ୍ତରାସର ବର୍ଣ୍ଣନା ଅତ୍ୟନ୍ତ ମନୋମୁଗ୍ଧକର ଭାବେ କରାଯାଇଛି । ବୈଷ୍ଣବ ସାହିତ୍ୟ ଓ ସଂସ୍କୃତି ବସନ୍ତରାସ ବର୍ଣ୍ଣନା ମହାକବି ଜୟଦେବଙ୍କର ଦାନ । ଶ୍ରୀଚୈତନ୍ୟ ଓ ପଞ୍ଚସଖା ଓଡ଼ିଶାର ଗ୍ରାମେ ଗ୍ରାମେ ବୁଲି ସଂକୀର୍ତ୍ତନ ରସ ପ୍ରସାର କରିଥିଲେ ଏବଂ ପ୍ରତିବର୍ଷ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଲିକୁ ଯାଇ କେନ୍ଦୁଲି ରାସ୍ତାରେ ଗୀତଗୋବିନ୍ଦ ପଦ ବୋଲି ରାସ ସଂକୀର୍ତ୍ତନ କରୁଥିଲେ । ଏହିପରି ଓଡ଼ିଶାରେ ଶ୍ରୀମନ୍ଦିର ଓ ରାହାସ ନୃତ୍ୟର ସମ୍ପର୍କ ଅତି ପ୍ରାଚୀନ ଓ ସମୃଦ୍ଧ । ଏହି ରାସନୃତ୍ୟ ବୃନ୍ଦାବନରୁ ଓଡ଼ିଶା ଆସି ନାହିଁ କିମ୍ବା ଶ୍ରୀଚୈତନ୍ୟ ଏହାକୁ ବଙ୍ଗଦେଶରୁ ଆଣିନାହାନ୍ତି । ଏହା ଓଡ଼ିଶାର ଏକାନ୍ତ ନିଜସ୍ୱ ।

ମୁଖ୍ୟ ଶାସନ ସଚିବ, ଓଡ଼ିଶା
ଭୁବନେଶ୍ୱର

# ଶ୍ରୀଜୟଦେବଙ୍କ ସମୟକାଳ ଓ ଜନ୍ମସ୍ଥଳୀ

ବିଜୟ ଚନ୍ଦ୍ର ଜେନା

**ଭା**ରତବର୍ଷର ଶେଷ ଶାସ୍ତ୍ରୀୟ ତଥା ପ୍ରଥମ ଆଧୁନିକ କବି ଭାବରେ କବି ଜୟଦେବ ଅଗ୍ରଗଣ୍ୟ । ସମଗ୍ର ଭାରତବର୍ଷର ପ୍ରାତଃସ୍ମରଣୀୟ କବିମାନଙ୍କ ମଧ୍ୟରେ ଉତ୍କଳୀୟ କବି ଶ୍ରୀ ଜୟଦେବ ନିଃସନ୍ଦେହରେ ଜଣେ ଅପ୍ରତିଦ୍ୱନ୍ଦୀ କବି । ସଂସ୍କୃତରେ ରଚିତ ତାଙ୍କର ଶ୍ରୀଗୀତଗୋବିନ୍ଦ କାବ୍ୟ ଏକ ଅନବଦ୍ୟ କୃତି । ଦ୍ୱାଦଶ ଶତାବ୍ଦୀରେ ରଚିତ ଏହି କାବ୍ୟଗ୍ରନ୍ଥରେ ରାଧାକୃଷ୍ଣଙ୍କ ଦିବ୍ୟଲୀଳାକୁ ଅତି ଚମତ୍କାର ଭାବେ ବର୍ଣ୍ଣନା କରାଯାଇଛି । ଏହାର ଲଳିତ ସୁନ୍ଦର ପଦାବଳି କେବଳ ଶ୍ରୀକ୍ଷେତ୍ରରେ ନୁହେଁ ସାରା ବିଶ୍ୱରେ ଆଦୃତି ଲାଭ କରିଛି । ଏଯାବତ୍ ଏହାର ୫୦ ଖଣ୍ଡ ଟୀକା ଏବଂ ଶହେ ପଞ୍ଚାବନ ଖଣ୍ଡ ଅନୁରୂପ କାବ୍ୟ ରଚିତ ହୋଇଛି । ଫରାସୀ, ଇଂରାଜୀ, ଋଷୀୟ ଆଦି ବିଭିନ୍ନ ବିଦେଶୀ ଭାଷାରେ ଏବଂ ଭାରତର ବହୁ ପ୍ରାଦେଶିକ ଭାଷାରେ ଏହି କାବ୍ୟର ଅନୁବାଦ କାର୍ଯ୍ୟ ସଂପନ୍ନ ହୋଇସାରିଛି । ସୁତରାଂ କବି ଭାବରେ ଶ୍ରୀଜୟଦେବ ସାରା ବିଶ୍ୱରେ ମାନ୍ୟତା ଲାଭ କରି ସାରିଛନ୍ତି ।

ବହୁ ବିଚାର ବିଶ୍ଲେଷଣ ପରେ ଓଡିଶାର ପ୍ରାଚୀ ନଦୀ ତଟର କେନ୍ଦୁବିଲ୍ୱ ଗ୍ରାମ (ଅଧୁନା କେନ୍ଦୁଲି ଭାବେ ପରିଚିତ)କୁ କବିଙ୍କର ଜନ୍ମସ୍ଥାନ ଭାବେ ଗ୍ରହଣ କରାଯାଇଛି । ମାତ୍ର କେତକ ଭିତ୍ତିହୀନ ମିଥ୍ୟା ତଥ୍ୟକୁ ଅବଲମ୍ବନ କରି ବଙ୍ଗଳାର କତିପୟ ଗବେଷକ କବିଙ୍କ ଜନ୍ମସ୍ଥାନ ବାଙ୍ଗଲାଦେଶ ବୋଲି ଉଲ୍ଲେଖ କରିବା ସହିତ ଏହାକୁ ପ୍ରତିପାଦିତ କରିବା ପାଇଁ ବୃଥା ପ୍ରୟାସ କରିଛନ୍ତି ।

ମୈଥିଳୀ କବି ବିଦ୍ୟାପତି ଅଭିନବ ଶ୍ରୀଗୀତଗୋବିନ୍ଦର ରଚୟିତା ହୋଇଥିବାରୁ କେତେକ ଗବେଷକ ମତ ପ୍ରଦାନ କରନ୍ତି ଯେ, ଗୀତଗୋବିନ୍ଦ କାବ୍ୟର ରଚୟିତା ବିହାର ଅନ୍ତର୍ଗତ ତିରହୁତ୍ ନିକଟସ୍ଥ ବାହାନ ନଦୀ କୂଳରେ ସମ୍ଭବତଃ ଜନ୍ମଗ୍ରହଣ କରିଥିଲେ । ବାଂଲାଦେଶରେ କେନ୍ଦୁଲି ନାମକ ଏକ ଗ୍ରାମ ଅବସ୍ଥିତ ଥିବାରୁ କବିଙ୍କ ଜନ୍ମସ୍ଥାନ ବାଂଲାଦେଶରେ ହୋଇଥିବା ସମ୍ଭବ ବୋଲି ଆଉ କେତେକ ଗବେଷକ ମତ ପ୍ରକାଶ କରିଛନ୍ତି ।

ଶ୍ରୀଗୀତଗୋବିନ୍ଦ କାବ୍ୟର ଆଦ୍ୟ ଚାରିଗୋଟି ପଦରେ ଉମାପତିଧର, ଶରଣ, ଗୋବର୍ଦ୍ଧନ ଏବଂ ଧୋଇ ଏହି ପ୍ରମୁଖ ଚତୁର୍କବିଙ୍କର ନାମୋଲ୍ଲେଖ ରହିଛି । ଜୟଦେବଙ୍କ ସମେତ ଏହି ପାଞ୍ଚଜଣ କବି ବଙ୍ଗଳାର ଅଧିପତି ଲକ୍ଷ୍ମଣସେନ୍‌ଙ୍କ ଦରବାରର ରାଜକବି ଥିଲେ ବୋଲି କେତେକ ବଙ୍ଗ ଭାଷାନୁରାଗୀ ଯୁକ୍ତି ଦର୍ଶାଇଛନ୍ତି । ମାତ୍ର ଏଠାରେ ପ୍ରଣିଧାନଯୋଗ୍ୟ ଯେ ଲକ୍ଷ୍ମଣସେନ୍ ସମ୍ଭବତଃ ବିହାରରେ ପ୍ରଚଳିତ ଥିଲା । ବଙ୍ଗଳାରେ ନୁହେଁ ।

୧୨୦୫ ଖ୍ରୀଷ୍ଟାବ୍ଦରେ ଶ୍ରୀଧର ଦାସ ବିରଚିତ ସଦୁକ୍ତି କର୍ଣ୍ଣାମୃତରେ ବଙ୍ଗଳାର ଲକ୍ଷ୍ମଣସେନ୍‌ଙ୍କ ବିଷୟରେ ଉଲ୍ଲେଖ ରହିଅଛି । ଏହି କାବ୍ୟ ଅନୁସାରେ ଲକ୍ଷ୍ମଣସେନ୍‌ଙ୍କ ରାଜତ୍ୱ ୧୧୮୧ ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇଥିଲା । ଏହି ସମୟ ଅନୁସାରେ କବି ଜୟଦେବଙ୍କ ପ୍ରଦତ୍ତ ଅନ୍ୟ କବିଗଣଙ୍କ ସମୟକୁ ବିଚାରକୁ ନିଆଯାଉ ।

ଲକ୍ଷ୍ମଣସେନ୍‌ଙ୍କ ପିତାମହ ବିଜୟସେନ୍‌ଙ୍କ ଦେଓପଡା ପ୍ରଶସ୍ତିର ରଚନା କରିଥିଲେ ଉମାପତି । ତେଣୁ ଏହା ନିଃସନ୍ଦେହରେ କୁହାଯାଇ ପାରେ ଯେ ଉମାପତି ଲକ୍ଷ୍ମଣସେନ୍‌ଙ୍କ ଦରବାରରେ ନଥିଲେ । ଶରଣ ଏବଂ ଗୋବର୍ଦ୍ଧନ ଲକ୍ଷ୍ମଣସେନ୍‌ଙ୍କ ରାଜଦରବାରରେ କବି ଥିବାର କୌଣସି ପ୍ରମାଣସିଦ୍ଧ ତଥ୍ୟ ମଧ୍ୟ ମିଳିନାହିଁ । ଐତିହାସିକ ଡଃ ନବୀନ କୁମାର ସାହୁ ଧୋୟୀଙ୍କୁ ପରବର୍ତ୍ତୀ କାଳର କବି ଭାବରେ ଅଭିହିତ କରିଛନ୍ତି । ଅତଏବ ଗୋବର୍ଦ୍ଧନ, ଶରଣ, ଉମାପତି ଏବଂ ଧୋୟୀଙ୍କ ସମେତ ଜୟଦେବ ଯେ ରାଜା ଲକ୍ଷ୍ମଣ ସେନ୍‌ଙ୍କ ଦରବାରର କବି ଥିଲେ, ଏହା ଗ୍ରହଣୀୟ ନୁହେଁ ।

ବର୍ତ୍ତମାନ କବିଙ୍କର ସମୟ ନିରୂପଣ ନିମନ୍ତେ ଅନ୍ୟାନ୍ୟ ଉତ୍ସପ୍ରତି ଦୃଷ୍ଟିପାତ କରାଯାଉ । ଗୀତଗୋବିନ୍ଦ କାବ୍ୟର ସର୍ବପ୍ରଥମ ଟୀକାକାର ହେଉଛନ୍ତି ଉଦୟନ । ଭୁବନେଶ୍ୱରସ୍ଥିତ ମେଘେଶ୍ୱର ମନ୍ଦିର ଏବଂ ନିଆଳିସ୍ଥିତ ଶୋଭନେଶ୍ୱର ମନ୍ଦିରର ଅଭିଲେଖାକାର ହେଉଛନ୍ତି ଏହି ଉଦୟନ । ଗଙ୍ଗବଂଶୀ ରାଜା ରାଜରାଜ (୨ୟ)ଙ୍କର ଭଗିନୀପତି ସ୍ୱପ୍ନେଶ୍ୱର ଦେବ, ମେଘେଶ୍ୱର ମନ୍ଦିରେ ନିର୍ମାତା । ରାଜରାଜ (୨ୟ)ଙ୍କର ରାଜତ୍ୱର ଅବଧି ଥିଲା ୧୧୭୦ରୁ ୧୧୯୪ ଖ୍ରୀଷ୍ଟାବ୍ଦ । ତେବେ ଏଥିରୁ ସ୍ପଷ୍ଟ ଅନୁମାନ କରିହୁଏ ଯେ ଗୀତଗୋବିନ୍ଦର ରଚନା ୧୧୭୦ ଖ୍ରୀଷ୍ଟାବ୍ଦ ପୂର୍ବରୁ ସମାପ୍ତ ହୋଇସାରିଥିଲା । ଉଦୟନଙ୍କର ଜ୍ୟେଷ୍ଠଭ୍ରାତା ଗୋବର୍ଦ୍ଧନ ଆଚାର୍ଯ୍ୟଙ୍କ କୃତିକୁ ଯଦି ଆମେ ବିଚାରକୁ ନେଉ, ତେବେ ଏହା ସ୍ୱତଃ

ପ୍ରାମାଣିତ ହୁଏ ଯେ ସେ ଗୋବର୍ଦ୍ଧନଙ୍କ ପୂର୍ବରୁ ପ୍ରତିଷ୍ଠା ଲାଭ କରିଥିଲେ । ତେଣୁ ଗୀତଗୋବିନ୍ଦର ରଚନା ୧୧୫୦ ଖ୍ରୀଷ୍ଟାବ୍ଦ ବେଳକୁ ସଂପନ୍ନ ହୋଇ ସାରିଥିଲା ।

ରାଘବ ଦେବଙ୍କ ଲିଙ୍ଗରାଜ ମନ୍ଦିର ଅଭିଲେଖରେ କୁରୁମପାଟକର ଜନୈକ ସାଧୁପ୍ରସାଦ ଜୟଦେବଙ୍କ ବିଷୟରେ ଉଲ୍ଲେଖ ଅଛି । ଦ୍ୱିତୀୟ ଭାନୁଦେବଙ୍କ ରାଜତ୍ୱ କାଳରେ ପୁରୀ ତାମ୍ର ଶାସନରେ ଲିଖିତ କୁରୁମପଦ ଏବଂ ଉପରୋକ୍ତ କୁରୁମପାଟକ ସମସ୍ଥାନ ବୋଲି ଅନୁମାନ କରାଯାଏ । ଏହି କୁରୁମପଦକୁ ସଂପ୍ରତି ପୁରୀ ଜିଲ୍ଲାର ରାହାଙ୍ଗ ଗ୍ରାମ ରୂପେ ଚିହ୍ନଟ କରାଯାଇଛି । ୧୬୬୩ ଖ୍ରୀଷ୍ଟାବ୍ଦରେ କୃତ୍ତିବାସ ଦେବଙ୍କୁ ମହାଦୀପ ପ୍ରଦାନ କାର୍ଯ୍ୟରେ ମଧ୍ୟମା ଦେବୀଙ୍କୁ ସାଧୁ ପ୍ରଧାନ ଜୟଦେବ ସାହାଯ୍ୟ କରିଥିଲେ ବୋଲି ଲିଙ୍ଗରାଜ ମନ୍ଦିର ଅଭିଲେଖରେ ଉଲ୍ଲେଖ ରହିଛି ।

ଉତ୍କଳ ତଥା ଭାରତର ବହୁ ମଧ୍ୟଯୁଗୀୟ କବି ସେମାନଙ୍କ କୃତିରେ କବି ଜୟଦେବଙ୍କର ନାମୋଲ୍ଲେଖ କରିଛନ୍ତି । ୧୫୫୩ ଖ୍ରୀଷ୍ଟାବ୍ଦରେ ରଚିତ 'ସଂପ୍ରଦାୟ ପ୍ରଦୀପ'ରେ ଏହାର ପ୍ରଣେତା ଗଦା ଦ୍ୱିବେଦୀ ଜୟଦେବଙ୍କୁ ଉତ୍କଳର କବି ଭାବେ ଅଭିହିତ କରିଛନ୍ତି । ଗୋଆଲିୟରର କବି ନାବଜୀ ତାଙ୍କର 'ଭକ୍ତମାଳା' ଗ୍ରନ୍ଥରେ ସହମତି ପ୍ରଦାନ କରିଛନ୍ତି । ମରାଠୀ କବି ମହୀପତିକର୍ତ୍ତୃକ ଭକ୍ତ ବିଜୟ କାବ୍ୟରେ ଉଲ୍ଲେଖ କରାଯାଇଛି ଯେ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁବିଲ୍ୱ ବା ତିନ୍ଦୁବିଲ୍ୱ ଗ୍ରାମ ଉତ୍କଳର ପୁରୀ ଜିଲ୍ଲାରେ ଅବସ୍ଥିତ । ସେ ଆହୁରି ଲେଖିଛନ୍ତି ଯେ କବି ଜୟଦେବ ପୁରୁଷୋତ୍ତମ କ୍ଷେତ୍ରରେ ପଦ୍ମାବତୀଙ୍କୁ ବିବାହ କରିଥିଲେ । କବି କୃଷ୍ଣଦାସଙ୍କର 'ଭକ୍ତମାଳା' କାବ୍ୟରେ ମହୀପତିଙ୍କ ଏହି ଉକ୍ତି ଉଲ୍ଲିଖିତ ଅଛି । ମିଥିଳାର କବି ଚନ୍ଦ୍ରଦତ୍ତ ତାଙ୍କର କାବ୍ୟ ଭକ୍ତମାଳାରେ ମଧ୍ୟ ଠିକ୍ ଏହି କଥା ଦର୍ଶାଇବାକୁ ଯାଇ ଲେଖିଛନ୍ତି ଯେ ଜୟଦେବ ଜଣେ ବ୍ରାହ୍ମଣ କବି ଥିଲେ । ସେ ପ୍ରଭୁ ପୁରୁଷୋତ୍ତମଙ୍କର ପରମଭକ୍ତ ଥିଲେ । ପୁରୀ ସନ୍ନିକଟ ବିନ୍ଦୁବିଲ୍ୱ ନାମକ ଏକ ଗ୍ରାମରେ ସେ ଜନ୍ମଗ୍ରହଣ କରିଥିଲେ ଏବଂ ଗୀତଗୋବିନ୍ଦ ଶୀର୍ଷକ କାବ୍ୟ ରଚନା କରିଥିଲେ । ଏ ସମସ୍ତ ତଥ୍ୟରୁ ଜୟଦେବ ଯେ ଜଣେ ଉତ୍କଳୀୟ କବି ଏହା ସହଜରେ ଗ୍ରହଣ କରାଯାଇପାରେ ।

'ଜୟଦେବ ଚରିତ' ଶୀର୍ଷକ ଏକ ଗ୍ରନ୍ଥ ବଙ୍ଗୀୟ ସାହିତ୍ୟ ପରିଷଦ ପକ୍ଷରୁ ପ୍ରକାଶିତ । କବି ଜୟଦେବଙ୍କ ଜନ୍ମସ୍ଥାନ ବଙ୍ଗଳାର ବୀରଭୂମ ଜିଲ୍ଲା ବୋଲି ଏଥିରେ ଉଲ୍ଲେଖ କରାଯାଇଛି । ଏହି ଗ୍ରନ୍ଥର ଅନୁରୂପ ଦ୍ୱିତୀୟ ଗ୍ରନ୍ଥ ଆଉ ନାହିଁ କିମ୍ବା ଏହି ଗ୍ରନ୍ଥର ତଥ୍ୟକୁ ସମର୍ଥନ କଲାଭଳି କୌଣସି ସୂଚନା ହସ୍ତଗତ ହୋଇନାହିଁ । କେବେ କେବେ ଏହି ଗ୍ରନ୍ଥରେ ସନ୍ନିବେଶିତ ତଥ୍ୟକୁ ନେଇ ବହୁ ବଙ୍ଗୀୟ ଗବେଷକ ମତ ଦିଅନ୍ତି ଯେ ବଙ୍ଗଳାର ବୀରଭୂମ ଜିଲ୍ଲା ଅନ୍ତର୍ଗତ ଅଜୟ ନଦୀ ତଟବର୍ତ୍ତୀ କେନ୍ଦୁଲି ଗ୍ରାମରେ କବି ଜୟଦେବ ଜନ୍ମଗ୍ରହଣ କରିଥିଲେ । ସାର୍ ଉଇଲିଅମ୍ ଜୋନ୍ସ ଏ ସଂକ୍ରାନ୍ତରେ ଦେଇଥିବା ବକ୍ତବ୍ୟ ବେଶ୍ ପ୍ରଣିଧାନ ଯୋଗ୍ୟ । ସେ କହିଛନ୍ତି ଯେ କେବଳ କେନ୍ଦୁଲି ନାମକ ଗ୍ରାମର ଅବସ୍ଥିତି ଯୋଗୁଁ ଏହା ଜୟଦେବଙ୍କ ଜନ୍ମସ୍ଥାନ ଭାବେ ଗ୍ରହଣ କରିବା ଅସମୀଚୀନ । ଶ୍ରୀଚୈତନ୍ୟଙ୍କ ପୂର୍ବବର୍ତ୍ତୀ କିମ୍ବା ପରବର୍ତ୍ତୀ କୌଣସି କାବ୍ୟକୃତିରେ ଏ ସଂପର୍କରେ ଆଦୌ କୌଣସି ଉଲ୍ଲେଖ ନାହିଁ ।

ଅପରପକ୍ଷରେ ପ୍ରାଚୀ ତୀରର କେନ୍ଦୁଲି ଗ୍ରାମରେ ଷଷ୍ଠ/ସପ୍ତମ ଶତାବ୍ଦୀର ବହୁ ପ୍ରତ୍ନତାତ୍ତ୍ୱିକ ଅବଶେଷ ଦେଖିବାକୁ ମିଳେ । ତନ୍ମଧ୍ୟରୁ ଶାକ୍ତ ବୈଷ୍ଣବ ଓ ଶୈବ ମୂର୍ତ୍ତି ସମୂହ ବିଶେଷ ଦର୍ଶନୀୟ । ଏଥିରୁ ମିଳିଥିବା ଲକୁଳୀଶା, ଭୈରବ ମାଧବ ଏବଂ ଅମ୍ବିକାଙ୍କର ପ୍ରାଚୀନ ମୂର୍ତ୍ତି ସମେତ ଜଟାଜୁଟ ଧାରଣ ଏକ ଦ୍ୱିଭୁଜ ଅବୟବକୁ କବି ଜୟଦେବଙ୍କର ବୋଲି ବିଶ୍ୱାସ କରାଯାଏ । ଅମ୍ବିକାଙ୍କ ମୂର୍ତ୍ତିଟି ବେଲଗଛ ତଳୁ ମିଳିଥିବା ବେଳେ ଅନ୍ୟ ଏକ ଜାଗେଶ୍ୱରୀ ମୂର୍ତ୍ତି କେନ୍ଦୁଗଛ ମୂଳରୁ ମିଳିଛି । ଏହି ଦୁଇଦେବୀ କେନ୍ଦୁଲିର ଅଧିଷ୍ଠାତ୍ରୀ ଦେବୀ ଭାବେ ଏବେ ବି ପୂଜା ପାଉଛନ୍ତି ।

କେନ୍ଦୁଲିଠାରେ ଅବସ୍ଥିତ ଜରାଜୀର୍ଣ୍ଣ ଅମ୍ବିକା ମନ୍ଦିରର ଦ୍ୱାରବନ୍ଧ ଉପରେ ଦ୍ୱାଦଶ ଶତାବ୍ଦୀ କାଳର ଏକ ଅଭିଲେଖ ଦେଖିବାକୁ ମିଳେ । ଏହି ଅଭିଲେଖର ଜୟ ଜଗଦୀଶ ହରେ ଦର୍ଶନ ଯୋଗୁଁ, ଅଭିଲେଖଟିର ରଚନାକାଳ ୧୧୧୨ ଶକାବ୍ଦ ଅର୍ଥାତ୍ ୧୧୯୦ ଖ୍ରୀଷ୍ଟାବ୍ଦ ବୋଲି ଏଥିରେ ସ୍ପଷ୍ଟ ଉଲ୍ଲେଖ ରହିଛି । କବି ଜୟଦେବଙ୍କ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ଏହି ମନ୍ଦିରଟି ନିର୍ମାଣ କରାଯାଇଥିଲା ବୋଲି ବିଶ୍ୱାସ କରାଯାଏ । କେନ୍ଦୁଲି ଗ୍ରାମର ମଧ୍ୟଭାଗରେ ଏକ ଲକ୍ଷ୍ମୀ ନୃସିଂହ ମନ୍ଦିର ବିଦ୍ୟମାନ । ସମ୍ଭବତଃ ରାଧାକୃଷ୍ଣ ତତ୍ତ୍ୱ ବଦଳରେ ଏଠାରେ ଲକ୍ଷ୍ମୀ ନୃସିଂହଙ୍କ ଉପାସନା ପରବର୍ତ୍ତୀ କାଳରେ ପ୍ରଚଳିତ କରାଯାଇଥିଲା ।

ଗଙ୍ଗବଂଶୀ ନରପତି ନରସିଂହ ଦେବ (୪ର୍ଥ)ଙ୍କ ଏକ ତାମ୍ରଶାସନ ମଧ୍ୟ ଏହି ସ୍ଥାନରୁ ମିଳିଅଛି । ୧୩୭୮ ଖ୍ରୀଷ୍ଟାବ୍ଦରୁ ୧୪୦୧ ଖ୍ରୀଷ୍ଟାବ୍ଦ ଏହି ଅବଧିରେ ନରସିଂହ ଦେବ ରାଜତ୍ୱ କରୁଥିଲେ । ଏହି ସ୍ଥାନର ସାମାନ୍ୟ ଦୂରରେ ପ୍ରାଚୀ, କୁଶଭଦ୍ରା ଓ ଧନୁଆ ଏହି ତିନିଟି ନଦୀର ସଂଯୋଗସ୍ଥଳ ତ୍ରିବେଣୀ ଘାଟ ବିଦ୍ୟମାନ । ଏଠାରେ ପୂଜିତ ହେଉଥିବା ବିଷ୍ଣୁଙ୍କ ନାମ ତ୍ରିବେଣୀ ମାଧବ । ପ୍ରତିବର୍ଷ ଏଠାରେ ଏକ ବଡ ଧରଣର ମେଳା ଅନୁଷ୍ଠିତ ହୁଏ । ଜନଶ୍ରୁତି କହେ ଯେ କବି ଜୟଦେବ ଏଠାରେ ସ୍ନାନ ସମାପନ କରି ତ୍ରିବେଣୀ ମାଧବଙ୍କୁ ଆରାଧନା କରୁଥିଲେ । କବି ଜୟଦେବଙ୍କ ସ୍ମୃତିକୁ ଅମର କରିବା ପାଇଁ ପ୍ରତିବର୍ଷ ଏଠାରେ ଏହି ମେଳା ମହା ସମାରୋହରେ ପାଳିତ ହୋଇଆସୁଛି ।

ଏଠାରେ ଏହା ଉଲ୍ଲେଖ କରାଯାଇପାରେ ଯେ ସପ୍ତମ/ଅଷ୍ଟମ ଶତାବ୍ଦୀରେ ଓଡ଼ିଶାର ସର୍ବତ୍ର ବୈଷ୍ଣବ ଧର୍ମ ପରିବ୍ୟାପ୍ତ ହୋଇଥିଲା । ଦଶାବତାର ମୂର୍ତ୍ତି ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା । ପଶ୍ଚିମ ଓଡ଼ିଶା ବିଶେଷତଃ ସଇଁତଳା ଓ ରାଣୀପୁର-ଝରିଆଲ୍‌ରେ ଆମେ ଏହି

ଦଶାବତାର ବିଗ୍ରହର ଅବଶେଷ ଦେଖିବାକୁ ପାଉ । ପ୍ରାଚୀ ଅବବାହିକାରେ ମାଧବ ଉପାସନା, ଦଶାବତାର ଏବଂ ଗୋପୀନାଥ ଉପାସନା ମଧ୍ୟ ବିପୁଳ ଆଦୃତି ଲାଭ କରିଥିଲା । ଜନମାନସର ଏହି ବୈଷ୍ଣବ ଅନୁରକ୍ତି କବି ଜୟଦେବଙ୍କୁ ବିଶେଷ ଭାବେ ପ୍ରଭାବିତ କରିଥିଲା । ଓଡିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ଦଶମ ଶତାବ୍ଦୀର ଏକ କୃଷ୍ଣ ବିଷ୍ଣୁ ମୂର୍ତ୍ତିରେ ମଧ୍ୟ ଆମେ ଦଶାବତାର ବିଗ୍ରହ ଦେଖିବାକୁ ପାଉଁ ।

କେନ୍ଦୁଲୀ ଗ୍ରାମଟି ମୂଳତଃ ଏକ ଶାସନ । ବର୍ତ୍ତମାନ ମଧ୍ୟ ଏହାର ଏକ ଅଂଶକୁ କେନ୍ଦୁଲୀ ଶାସନ କୁହାଯାଏ । ଅନ୍ୟ ଦୁଇଟି ଅଂଶ ଯଥାକ୍ରମେ କେନ୍ଦୁଲି ପାଟଣା ଓ କେନ୍ଦୁଲି ଦେଉଳୀ ଭାବରେ କଥିତ । ଏ ସମସ୍ତ ତଥ୍ୟରୁ ସ୍ପଷ୍ଟ ଆଭାସ ମିଳେ ଯେ ବର୍ତ୍ତମାନର କେନ୍ଦୁଲି ଗ୍ରାମ ହିଁ ପ୍ରାଚୀନ କାଳର କେନ୍ଦୁବିଲ୍ୱ ନାମରେ କଥିତ ହେଉଥିଲା ଏବଂ ଏହା କବି ଜୟଦେବଙ୍କର ଜନ୍ମସ୍ଥାନ ଥିଲା ।

କହିବା ନିଷ୍ପ୍ରୟୋଜନ ଯେ ଲୋକପ୍ରିୟତା ଦୃଷ୍ଟିରୁ କବି ଜୟଦେବଙ୍କ ଗୀତଗୋବିନ୍ଦ ସମସ୍ତ ଭୌଗୋଳିକ ସୀମା ଅତିକ୍ରମ କରି ଯାଇଛି । ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟର ପ୍ରଫେସର ବାରବରା ଷ୍ଟୋଲାର ମିଲର ଯଥାର୍ଥରେ କହିଛନ୍ତି ଯେ ପୂର୍ବ ଭାରତରେ ଦ୍ୱାଦଶ ଶତାବ୍ଦୀରେ ରଚିତ ଏହି କାବ୍ୟର ଲୋକପ୍ରିୟତା ଅଦ୍ୟାପି ଅକ୍ଷୁର୍ଣ୍ଣ ରହିଛି । ସମଗ୍ର ଉପମହାଦେଶରେ ଏହାର ସଂଗୀତ ମାଧୁର୍ଯ୍ୟକୁ ଅନୁଭବ କରିହୁଏ । ପଶ୍ଚିମ ଭାରତର ଗୁଜରାଟରେ ତ୍ରୟୋଦଶ ଶତାବ୍ଦୀର ମନ୍ଦିରର ଶିଳାରେ ଏହାର କିଛି ଅଂଶ ଉତ୍କୀର୍ଣ୍ଣ ହୋଇଛି । ଭାରତର ପ୍ରାୟ ସବୁ ସ୍ଥାନରେ ଏହାର ଟୀକା ଦେଖିବାକୁ ମିଳେ । ଓଡିଶା ଓ ବଙ୍ଗଳାସମେତ ଦକ୍ଷିଣ ଭାରତର ଭକ୍ତି ସଂଗୀତରେ ମଧ୍ୟ ଏହାର ସ୍ଥାନ ସ୍ୱତନ୍ତ୍ର । ଷୋଡଶ ଶତାବ୍ଦୀ ଠାରୁ ଏଯାବତ୍ କେରଳର ବିଷ୍ଣୁ ମନ୍ଦିର ମାନଙ୍କରେ ଏହି କାବ୍ୟର ସୁମଧୁର ସଂଗୀତ ଗାନ କରାଯାଉଛି । ମଧ୍ୟଯୁଗୀୟ ରାଜସ୍ଥାନୀ ଚିତ୍ରକଳାରେ ଏହି କାବ୍ୟର ଗୀତିକଥାକୁ ଏକ ମୁଖ୍ୟ ବିଷୟ ଭାବରେ ଗ୍ରହଣ କରାଯାଇଛି । ଏପରିକି ନେପାଳ ଓ ମଣିପୁରର ନାଟ୍ୟ ପରମ୍ପରାରେ ମଧ୍ୟ ଗୀତଗୋବିନ୍ଦର ପ୍ରତିଫଳନ ଅଦ୍ୟାବଧି ଦେଖିବାକୁ ମିଳେ ।

ରାଜ୍ୟ ସଂଗ୍ରହାଳୟଦ୍ୱାରା କେନ୍ଦୁଲିଠାରେ ପ୍ରତ୍ନତାତ୍ତ୍ୱିକ ଖନନ କାର୍ଯ୍ୟ ହାତକୁ ନିଆଯାଇଛି । ତ୍ରୀମାଳୀ ମଠ ଓ ପ୍ରହରାଜ ଡିହାଠାରେ ଖନନ କାର୍ଯ୍ୟ ଦ୍ରୁତଗତିରେ ଚାଲିଛି । ପ୍ରାରମ୍ଭିକ ପ୍ରତ୍ନତାତ୍ତ୍ୱିକ ପର୍ଯ୍ୟାଲୋଚନାରୁ କେନ୍ଦୁଲିର ପ୍ରାଚୀନତା ପ୍ରଥମ ଶତାବ୍ଦୀର ବୋଲି ଅନୁମାନ କରାଯାଉଛି । ଏଠାରେ ମିଳିଥିବା ପ୍ରାଚୀନ ମାଟି ପାତ୍ରାଂଶ, ଘରଦ୍ୱାର ଓ ମନ୍ଦିରର କିଛି ଧ୍ୱଂଶାବଶେଷ କେନ୍ଦୁଲି ଗ୍ରାମ ଅତୀ ପ୍ରାଚୀନ ବୋଲି ସୂଚାଇଦିଏ । ତେଣୁ ନିଃସନ୍ଦେହରେ କୁହାଯାଇପାରେ ଯେ କାଳଜୟୀ ଭକ୍ତକବି ଶ୍ରୀଜୟଦେବ ଓଡିଶାର କେନ୍ଦୁଲି ଗ୍ରାମରେ ହିଁ ଦ୍ୱାଦଶ ଶତାବ୍ଦୀରେ ଜନ୍ମ ଗ୍ରହଣ କରିଥିଲେ । ଏ ତଥ୍ୟକୁ କେନ୍ଦୁଲିରୁ ପ୍ରାପ୍ତ କେନ୍ଦୁଲି ତାମ୍ର ଫଳକର ଲେଖା ଆହୁରି ଦୃଢୀଭୂତ କରେ ।

କମିଶନର ତଥା ଶାସନ ସଚିବ
ସଂସ୍କୃତି ଏବଂ ସୂଚନା ଓ ଲୋକ ସଂପର୍କ ବିଭାଗ
ଭୁବନେଶ୍ୱର

## ଓଡ଼ିଶା ସୂଚନା କମିଶନ ସତ୍ୟନଗରସ୍ଥିତ ତୋଷାଳି ପ୍ଲାଜାକୁ ସ୍ଥାନାନ୍ତରିତ

ଓଡ଼ିଶା ସୂଚନା କମିଶନ ଗତ ମାସ ୧୫ ତାରିଖଠାରୁ ଭୁବନେଶ୍ୱରର ସତ୍ୟନଗରସ୍ଥିତ ତୋଷାଳୀ ପ୍ଲାଜାଠାରେ କାର୍ଯ୍ୟ କରୁଛି । ପୂର୍ବରୁ ଏହି କମିଶନ ଅସ୍ଥାୟୀ ଭାବେ ରାଜ୍ୟ ଅତିଥି ଭବନଠାରେ କାର୍ଯ୍ୟ କରୁଥିଲା । ସୂଚନା ଅଧିକାର ଅଧିନିୟମ, ୨୦୦୫ ଅନୁଯାୟୀ ଅପ୍ଲେଣ୍ଟ କେଶ୍ କିମ୍ବା ଦ୍ୱିତୀୟ ଅପିଲ୍ କରିବାକୁ ଚାହୁଁଥିବା ଯେକୌଣସି ନାଗରିକ ଓଡ଼ିଶା ସୂଚନା କମିଶନ, ବ୍ଲକ୍ ବି-୧, ତୋଷାଳି ପ୍ଲାଜା, ସତ୍ୟନଗର, ଭୁବନେଶ୍ୱର - ୭୫୧୦୦୭ ଠିକଣାରେ ଯୋଗାଯୋଗ କରିପାରିବେ ।

# ପ୍ରାଚୀକୂଳରେ ଗୀତଗୋବିନ୍ଦ କାବ୍ୟର ପ୍ରେରଣା

ଡକ୍ଟର ତ୍ରିନାଥ ପଟ୍ଟନାୟକ

**ଶ୍ରୀ** ଜୟଦେବ କୃତ 'ଗୀତଗୋବିନ୍ଦ' ହେଉଛି ଶ୍ରୀକୃଷ୍ଣ ଓ ଶ୍ରୀରାଧିକାଙ୍କର ଅପ୍ରାକୃତ ପ୍ରେମ ମାଧୁରୀର ରସସିକ୍ତ ସନ୍ଦର୍ଭ କାବ୍ୟ ଏହା ସତ୍ୱେ ଶ୍ରୀ ଜୟଦେବଙ୍କର ପ୍ରେରଣାର ଉତ୍ସ ହେଉଛନ୍ତି ମାଧବ । ମାଧବ ହିଁ ମା' (ଲକ୍ଷ୍ମୀ) ଧବ (ସ୍ୱାମୀ) ବିଷ୍ଣୁ ଅଟନ୍ତି । ଏଠାରେ ଶ୍ରୀରାଧା ସ୍ୱୟଂ ଲକ୍ଷ୍ମୀସ୍ୱରୂପା । ପରମ ବୈଷ୍ଣବ ଜୟଦେବ ପ୍ରାଚୀକୂଳରେ ବହୁ କାଳରୁ ପ୍ରତିଷ୍ଠିତ ଲକ୍ଷ୍ମୀନାରାୟଣଙ୍କର ମିଳିତ ବିଗ୍ରହ ସନ୍ଦର୍ଶନ କରି ମୁଗ୍ଧ ହୋଇଛନ୍ତି । ଶ୍ରୀକୃଷ୍ଣଙ୍କର ରାଧାଙ୍କପ୍ରତି ଥିବା ଅନୁରାଗ କଥାକୁ ପରିସ୍ଫୁଟ କଲାବେଳେ ଲକ୍ଷ୍ମୀନାରାୟଣଙ୍କର ମିଳନର ଚିତ୍ରସବୁ ତାଙ୍କ ଆଖି ଆଗରେ ନାଚି ଯାଇଛି । ସେ ସେହି ଦୃଶ୍ୟଗୁଡ଼ିକୁ ନିଜ କାବ୍ୟରେ ସ୍ଥାନିତ କରିଛନ୍ତି । ଜୟଦେବ ହେଉଛନ୍ତି ପ୍ରକୃତରେ ଲକ୍ଷ୍ମୀନାରାୟଣଙ୍କର ଉପାସକ । ପ୍ରକୃତି ପୁରୁଷର ମିଳନକୁ ଏକଦା ମହାକବି ମାନସ ନେତ୍ରରେ ଦର୍ଶନ କରି ରଘୁବଂଶ କାବ୍ୟର ଆଦ୍ୟରେ ପ୍ରକାଶ କରିଥିଲେ -

ବାଗର୍ଥାବିବସଂପୃକ୍ତୌ ବାତାର୍ତ ପ୍ରତିପତ୍ତୟେ<br>ଜଗତଃ ପିତରୌ ବନ୍ଦେ ପାର୍ବତୀ ପରମେଶ୍ୱରୌ ।

ବାଣୀ ଓ ଅର୍ଥ ଅଲଗା ହେଲେ ହେଁ ଏକ ସେହିଭଳି ପାର୍ବତୀ ଓ ଶିବ ଦେଖିବାକୁ ଦୁଇ ହେଲେ ସୁଦ୍ଧା ଏକ ଅଟନ୍ତି । ସେହିଭଳି ଜୟଦେବ ଲକ୍ଷ୍ମୀନାରାୟଣଙ୍କୁ ଏକତ୍ର ଏକ ରୂପରେ ଦର୍ଶନ କରିବା ନିମନ୍ତେ ବାଛି ବାଛି 'ମାଧବ' ଶବ୍ଦଟିକୁ ଗ୍ରହଣ କରିଛନ୍ତି । ମାଧବ ଶବ୍ଦଦ୍ୱାରା ଏହି ଅର୍ଥ ସୂଚିତ ହେଉଛି ଯେ ଯଦ୍ୟାପି ଶ୍ରୀଭଗବାନ ଲକ୍ଷ୍ମୀପତି ତଥାପି ତାଙ୍କର ଶ୍ରୀରାଧାଙ୍କପ୍ରତି ଅଧିକ ପ୍ରେମ ।

'ଗୀତଗୋବିନ୍ଦ' କାବ୍ୟର ପ୍ରଥମ ପ୍ରବନ୍ଧରେ ଭଗବାନଙ୍କର କେଳିକଥା ବର୍ଣ୍ଣନା କରାଯାଇଛି । କିନ୍ତୁ ନାୟକଙ୍କର ଉତ୍କର୍ଷ ବିନା କେଳି ସମ୍ଭବ ନୁହେଁ । ଏଣୁ ମହାକବି ଜୟଦେବ ଭଗବାନ ଶ୍ରୀକୃଷ୍ଣଙ୍କ ସ୍ୱରୂପ ନିରୂପଣପୂର୍ବକ ମଙ୍ଗଳଗୀତିରେ ଭଗବାନଙ୍କର ଜୟ ଜୟକାର କରିଛନ୍ତି ।

ଶ୍ରିତକମଳାକୁଚମଣ୍ଡଳ,<br>ଧୃତ କୁଣ୍ଡଳ, କଳିତ ଲଳିତ ବନମାଳା<br>ଜୟ ଜୟ ଦେବ ହରେ ।



ଏହି ଶ୍ଳୋକର ପ୍ରଥମ ସମ୍ବୋଧନ ହେଉଛି - 'ଶ୍ରିତ କମଳାକୁଚ ମଣ୍ଡଳ' । ଶ୍ରିତଂ କମଳାୟାଃ କୁଚମଣ୍ଡଳଂ ଯେ ନାଶ୍ରିତସୌ ତସ୍ମୁଦ୍ଧୌ ଶ୍ରିତ କମଳା କୁଚ ମଣ୍ଡଳ । ଅର୍ଥାତ୍ କମଳା (ଲକ୍ଷ୍ମୀ)ଙ୍କର ସ୍ତନମଣ୍ଡଳ ସେବନ କରୁଥିବା ହେ ଭଗବାନ, ଆପଣ ଲକ୍ଷ୍ମୀଙ୍କର ପ୍ରିୟ ଲକ୍ଷ୍ମୀ ଆପଣଙ୍କର ପ୍ରିୟ ଅଟନ୍ତି । ଭଗବାନଙ୍କର ଅନେକ ଆଭୂଷଣ ମଧ୍ୟରେ କୁଣ୍ଡଳର ସ୍ଥାନ ବହୁତ ମହତ୍ତ୍ୱପୂର୍ଣ୍ଣ । ମକରାକୃତ କୁଣ୍ଡଳଦ୍ୱାରା ଭଗବାନଙ୍କର ଶୋଭା ଅଧିକ ବଢ଼ି ଯାଉଥିଲା । ଆଉମଧ ପତ୍ରପୁଷ୍ପର ସମାହାରରେ ଗୁଣ୍ଠା ପାଦ ପର୍ଯ୍ୟନ୍ତ ଲମ୍ବିତ ମାଳାକୁ ବନମାଳା କୁହାଯାଏ । ଏହି ବିଶେଷଣ ବିଶିଷ୍ଟ, ଦିବ୍ୟ ଗୁଣଯୁକ୍ତ ଶ୍ରୀହରି ଆପଣଙ୍କର ଜୟ ହେଉ ।

ଏହି ଶ୍ଳୋକରେ ବର୍ଣ୍ଣିତ ବିଗ୍ରହକୁ ଜୟଦେବ ସର୍ବପ୍ରଥମେ ପ୍ରାଚୀକୂଳସ୍ଥ କୌଣସି ବିଷ୍ଣୁ ମନ୍ଦିରରେ ଦେଖିଛନ୍ତି । ସେହି ପ୍ରତିମୂର୍ତ୍ତିକୁ ଦେଖିଲା ପରେ ଲକ୍ଷ୍ମୀନାରାୟଣଙ୍କର ପରସ୍ପର ମିଶ୍ରିତ ରୂପ ବିଭା ତାଙ୍କୁ ବହୁତ ଆନନ୍ଦ ଦେଇଛି ଓ ତାଙ୍କରି ତୁଣ୍ଡରୁ ସ୍ୱତଃ ଶ୍ରୀହରିଙ୍କ ମଙ୍ଗଳାଚରଣ ରୂପେ ପ୍ରକାଶ ପାଇଛି - 'ଶ୍ରିତ କମଳା କୁଚମଣ୍ଡଳ... ।'

କବିଙ୍କୁ ଉକ୍ତ ଲକ୍ଷ୍ମୀନାରାୟଣଙ୍କ ମୂର୍ତ୍ତି ଏତେଦୂର ପ୍ରଭାବିତ କରିଥିଲା ଯେ ଶ୍ରୀକୃଷ୍ଣଙ୍କୁ ମାଧବ ରୂପେ ଗ୍ରହଣ କରିଥିଲେ ଓ ନିଜଗ୍ରାମ କେନ୍ଦୁବିଲ୍ୱର ଅମ୍ବିକା ମନ୍ଦିରସ୍ଥ ନବଗ୍ରହପାଟ ତଳେ ବାମ ଭାଗରେ ଏହି ଶ୍ଳୋକକୁ ଉଲ୍ଲେଖ କରାଇଥିଲେ । ତା'ପରେ ବୋଧେ ଗୀତଗୋବିନ୍ଦର ମଙ୍ଗଳାଚରଣରେ ଗ୍ରହଣ କରିଛନ୍ତି ।

ଉକ୍ତ ଲକ୍ଷ୍ମୀ ମୂର୍ତ୍ତିର କୁଚସୌଷ୍ଟବନିବିଙ୍କୁ ମୁଗ୍ଧ କରିଛି ସେ ସେହି ଦୃଶ୍ୟର ରୂପ ଗୀତଗୋବିନ୍ଦରେ ଉଲ୍ଲେଖ କରିଛନ୍ତି -

ପଦ୍ମାପୟୋଧରତଟୀ ପରିରଂଭ ଲଗ୍ନ-
କାଶ୍ମୀରମୁଦ୍ରିତମୁରୋମଧୁସୂଦନସ୍ୟ ।
ବ୍ୟକ୍ତାନୁରାଗମିବ ଖେଲଦନଂଗଖେଦ-
ସ୍ୱେଦାମ୍ବୁପୂରମନୁପୂରୟତୁ ପ୍ରିୟଂ ବଃ ।

ପଦ୍ମା ଅର୍ଥ ଶ୍ରୀଲକ୍ଷ୍ମୀ । ପୟୋଧରତଟୀ ପଦର ପ୍ରୟୋଗ କରି କବି ସ୍ତନର ଉନ୍ନତତ୍ତ୍ୱ ତା'ର ପ୍ରାନ୍ତଭାଗକୁ ପର୍ବତର ତଳ ଅଂଶ ସଂଗେ ସମାନ କରିଛନ୍ତି । ସ୍ତନ ତଟରେ ଲେପିତ କାଶ୍ମୀର ହ୍ରଦ ଭଗବାନଙ୍କର ବକ୍ଷ ସ୍ଥଳରେ ଲାଗିଥିବା କଥା କହି ପରସ୍ପରର ଆଲିଙ୍ଗନର ସୂଚନା ଦେଇଛନ୍ତି ।

ଶ୍ରୀ ଜୟଦେବଙ୍କ ବର୍ଣ୍ଣିତ ଶ୍ରୀଲକ୍ଷ୍ମୀନାରାୟଣ ମୂର୍ତ୍ତି କେଉଁ ମନ୍ଦିରରେ ପ୍ରତିଷ୍ଠିତ ଥିଲେ କିମ୍ବା କେଉଁ ମନ୍ଦିର ଗାତ୍ରରେ ଥିଲେ କହିହେବ ନାହିଁ । ମାତ୍ର ସେହି ଦୁର୍ଲ୍ଲଭ ମୂର୍ତ୍ତି ପ୍ରାଚୀନଦୀ କୂଳରେ ଅବସ୍ଥିତ ପୁରୀ ଜିଲ୍ଲା ଅନ୍ତର୍ଗତ ଚୌରାସୀ ଗ୍ରାମର ଏକ କ୍ଷୁଦ୍ର ମନ୍ଦିରରେ ପୂଜିତ । ଏହି ଚୌରାସୀ ଗ୍ରାମ କଟକ-କାକଟପୁର ରାସ୍ତାର ଚାରିଛକ ପରେ ଅମରେଶ୍ୱର ଗ୍ରାମ ନିକଟରୁ ପ୍ରାୟ ଦୁଇ କି.ମି. ଦୂରରେ ଅବସ୍ଥିତ । ନିଆଳୀ ମାଧବଠାରୁ ମଧ୍ୟ ଏକ ରାସ୍ତା ବହୁ ତୀର୍ଥ ସ୍ଥାନ ମଠ ମନ୍ଦିରକୁ ଅତିକ୍ରମ କରି ବିଶ୍ୱବିଖ୍ୟାତ ବରାହୀ ମନ୍ଦିର ଦେଇ ଲକ୍ଷ୍ମୀନାରାୟଣ ମନ୍ଦିର (ଚୌରାସୀ)ଠାରେ ମିଶିଛି ।

ମହାକବି ଜୟଦେବ ଗୀତଗୋବିନ୍ଦ କାବ୍ୟର ଛତ୍ରେ ଛତ୍ରେ ଲକ୍ଷ୍ମୀମାଧବଙ୍କର ବର୍ଣ୍ଣନା କରିଛନ୍ତି । କବି ମଙ୍ଗଳାଚରଣରେ ରାଧାମାଧବଙ୍କର ପ୍ରଣୟର ମନୋଜ୍ଞ ବର୍ଣ୍ଣନା କରିଛନ୍ତି । ସେଥିରେ ସେ କହିଛନ୍ତି -

ରାଧାମାଧବୟୋର୍ଜୟନ୍ତି ଯମୁନାକୂଳେ ରହଃ-କେଳୟଃ ।

କବି ଜୟଦେବ ନାରାୟଣ ବିଷ୍ଣୁଙ୍କ ଲକ୍ଷ୍ମୀଙ୍କର ଚରଣ ଚାରଣ ଚକ୍ରବର୍ତ୍ତୀ ରୂପେ ଚିତ୍ରଣ କରିଛନ୍ତି । ଭଗବାନ ପଦ୍ମାବତୀ (ପଦ୍ମ କରେ ଅସ୍ତି ଯସ୍ୟାଃ)ଙ୍କର ଚରଣ ସେବକ ଅଗ୍ରଗଣ୍ୟ ରୂପେ ନିଜକୁ ପରିଚିତ କରାଇଛନ୍ତି ।

କବି ଗୀତଗୋବିନ୍ଦର ଅଷ୍ଟମ ସର୍ଗକୁ 'ବିଲକ୍ଷ ଲକ୍ଷ୍ମୀପତି' ରୂପେ ନାମିତ କରିଛନ୍ତି । ଭଗବାନ ଲକ୍ଷ୍ମୀପତି ଅଥଚ ଅବତାର ବାଦରେ ଲକ୍ଷ୍ମୀସ୍ୱରୂପା ଶ୍ରୀରାଧାଙ୍କର ଭର୍ତ୍ସନାକୁ ସହ୍ୟ କରିଛନ୍ତି । ଶ୍ରୀରାଧା କହିଛନ୍ତି - ଆହେ ଲମ୍ପଟୀ କେଶବ ! ଅବଳା ବଧ କରିବାକୁ ହିଁ ତୁମର ଜନ୍ମ ବୋଲି ଯାହା ମୁଁ ଶୁଣିଛି ସେ କଥା ଧ୍ରୁବ ସତ୍ୟ । ମିନତି କରୁଛି, ତୁମେ ମୋ' ସମ୍ମୁଖରୁ ଶୀଘ୍ର ଅନ୍ତର ହୁଅ ।

'ହରି ହରି ଯାହି ମାଧବ ଯାହି କେଶବ ମା' ବଦ କୈତବବାଦମ୍ ।'

ଲକ୍ଷ୍ମୀପତି ମାଧବ ବିଲକ୍ଷ ହୋଇ ଅର୍ଥାତ୍ ବିସ୍ମିତ ହୋଇ ଚାହିଁ ରହିଲେ ଶ୍ରୀମତୀଙ୍କୁ । ଏଣୁ କବି ଜୟଦେବ ଶ୍ରୀକୃଷ୍ଣଙ୍କୁ ନାରାୟଣ ମନେକରି ଏହି ସର୍ଗର ନାମ ଦେଇଛନ୍ତି 'ବିଲକ୍ଷ ଲକ୍ଷ୍ମୀପତି' ।

ଗୀତଗୋବିନ୍ଦର ଦଶମ ସର୍ଗର ନାମ ରଖିଛନ୍ତି ମୁଗ୍ଧ ମାଧବ । ଶ୍ରୀରାଧାଙ୍କ କ୍ରୋଧ ଉପଶମ ହେବା ପରେ ଶ୍ରୀକୃଷ୍ଣଙ୍କପ୍ରତି ସେ ଅନୁରାଗୀ ହୋଇଛନ୍ତି । ଶ୍ରୀକୃଷ୍ଣ ମଧ ଫେରି ଆସିଛନ୍ତି ଶ୍ରୀରାଧାଙ୍କ କୁଞ୍ଜକୁ । ଉଭୟଙ୍କ ହୃଦୟରେ ପ୍ରେମ ଭାବର ଉଦ୍ରେକ ହୋଇଛି । ଏହି ଅବସରରେ ମୁଗ୍ଧ ମାଧବ ନତଜାନୁ ହୋଇ ଶ୍ରୀମତୀଙ୍କୁ ଆହ୍ୱାନ ଦେଇଛନ୍ତି - 'ଦେହି ପଦପଲ୍ଲବ ମୁଦାରମ୍ ।'

ଏହାବ୍ୟତୀତ କବି ଗୀତଗୋବିନ୍ଦର ଏକାଦଶ ସର୍ଗରେ (ସାନନ୍ଦ-ଗୋବିନ୍ଦଃ)ରେ ୧୪ ପଦଠାରୁ ୨୦ ପଦଯାଏଁ ମାଧବ ଶବ୍ଦକୁ ବାରମ୍ବାର ଉଲ୍ଲେଖ କରିଛନ୍ତି ।

ପ୍ରବିଶ ରାଧେ ମାଧବ - ସମୀପମିହ ।

ନିଆଳୀ ମାଧବର ମାଧବ ମୂର୍ତ୍ତି ଓ ଚୌରାସୀର ବହୁ ପ୍ରାଚୀନ ସମଗ୍ର ଭାରତବର୍ଷରେ ବିରଳ ଲକ୍ଷ୍ମୀନାରାୟଣ ମୂର୍ତ୍ତି ଯାହାକି ବିଶ୍ୱ ପଦ୍ମାସନ ଉପରେ ପରସ୍ପରକୁ ଆଲିଙ୍ଗନ ଭଙ୍ଗୀରେ ଉପବିଷ୍ଟ ହୋଇଛନ୍ତି । ଏହାବ୍ୟତୀତ ପ୍ରାଚୀକୂଳେ ବହୁ ମାଧବ ମୂର୍ତ୍ତି ଦେଖିବାକୁ ମିଳେ । ଲଳିତ ମାଧବ, ବୋଲରା ମାଧବ, ରଘୁନାଥପୁର ମାଧବ, ମୁଦଗଲ ମାଧବ, ନଟାବୁ ମାଧବ, ନିଆଳୀ ଶୋଭନେଶ୍ୱର ମନ୍ଦିରର ନୀଳମାଧବ, ପ୍ରାଚୀ ମାଧବ, ବରୁଣ ମାଧବ, ନିଭରଣ ମାଧବ, ମଙ୍ଗଳା ମନ୍ଦିରରେ ଥିବା ମାଧବ, ଲତାହରଣ ମାଧବ ଅନ୍ୟତମ ।

ଚୌରାସୀ ଗ୍ରାମର ପ୍ରତିଷ୍ଠିତ ଶ୍ରୀଲକ୍ଷ୍ମୀ ନାରାୟଣଙ୍କର ମାଧୁର୍ଯ୍ୟମୟ ପ୍ରତିମାକୁ ଲକ୍ଷ୍ୟ କରି କବି ଜୟଦେବ ଲେଖିଥିବା କେତୋଟି ପଦ ଗୀତଗୋବିନ୍ଦରୁ ଉଦାହରଣ ରୂପେ ଉଦ୍ଧୃତ କରାଗଲା -

ସ୍ଫୁରତୁ କୁଚକୁମ୍ଭୟୋରୁପରି ମଣିମଂଜରୀ
ରଂଜୟତୁ ତବ ହୃଦୟଦେଶମ୍
ରସତୁ ରସନାପି ତବ ଘନ-ମଣ୍ଡଳେ
ଘୋଷୟତୁ ମନ୍ମଥନିଦେଶମ୍ ।
(୧୦ମ ସର୍ଗ- ୬ ପଦ)

ଚୌରାସୀ ଶ୍ରୀଲକ୍ଷ୍ମୀଙ୍କୁ ଉଚ୍ଚ କୁଚ ପ୍ରଦେଶରେ ମଣିହାର ଲମ୍ବିତ ହୋଇଛି । ସେହି କଥାକୁ ରାଧାଙ୍କଠାରେ ପ୍ରୟୋଗ କରି ଶ୍ରୀକୃଷ୍ଣଙ୍କ ମୁଖରେ କୁହାଇଛନ୍ତି - ତୁମର ସ୍ତନରୂପୀ କଳସ ଉପରେ ମଣିରୂପୀ ମଂଜରୀ ପ୍ରକାଶିତ ହୋଇଛି, ଯାହାକି ତୁମର ହୃଦୟ ପ୍ରଦେଶରେ ସୁଶୋଭିତ ।

ଶ୍ରୀନାରାୟଣ ଉକ୍ତ ବିଗ୍ରହରେ ଶ୍ରୀଲକ୍ଷ୍ମୀଙ୍କ ମୁଖ କମଳକୁ ସ୍ମିତମୁଖରେ ଚାହିଁ ରହିଛନ୍ତି ଏବଂ କହୁଛନ୍ତି -

ବ୍ୟଥୟତି ବୃଥା ମୌନଂ ତନ୍ୱି ପ୍ରପଂଚୟ ପଂଚମଂ ... ।
(ଗୀ.ଗୋ. ୧୦ ସର୍ଗ ୧୩ ପଦ)

ହେ ତନ୍ୱି ! ଅକାରଣେ ମଉନ ହୋଇ
ବ୍ୟଥିତ କରୁ ମୋତେ ଯାତନା ଦେଇ
ମୋ' ବେଦନା ଘୁଂଚାଇ ମଧୁରାଳପେ
ଦୂର କରି କିଶୋରି ! ତୋ'ର ସନ୍ତାପେ ।
ସୁବଦନେ ! ଏବେ ତୁ କରୁଣା କରି
ବିମୁଖତା ଭାବକୁ ଛାଡ଼ ସୁନ୍ଦରି !
ହେ ମୁଗ୍‌ଧେ ! ଉପସ୍ଥିତ ନିଜେ ମୁଁ ଆସି
ପରିତ୍ୟାଗ ନକର ମୋତେ ପ୍ରେୟସୀ ।

ଶ୍ରୀନାରାୟଣ ହିଁ ଶ୍ରୀକୃଷ୍ଣ ଓ ଶ୍ରୀକୃଷ୍ଣଙ୍କର ସର୍ବମୟ ପୂର୍ଣ୍ଣାଙ୍ଗ ସ୍ୱରୂପ ଶ୍ରୀଜଗନ୍ନାଥ । ଶ୍ରୀଜଗନ୍ନାଥାଷ୍ଟକରେ ଶ୍ରୀଜଗନ୍ନାଥ-ରାଧା-ମାଧବ ତତ୍ତ୍ୱକୁ ଶ୍ରୀରାଧାକୃଷ୍ଣ ତତ୍ତ୍ୱ ରୂପେ ପ୍ରୟୋଗ କରାଯାଇ କବି ଗାଇଛନ୍ତି -

ପରଂବ୍ରହ୍ମାପୀଡ଼ଃ କୁବଳୟଦଳୋତ୍‌ଫୁଲ୍ଲ ନୟନୋ ।
ନିବାସୀ ନୀଳାଦ୍ରୌ ନିହିତ ଚରଣୋ[illegible]ନ୍ତ ଶିରସି ।
ରସାନନ୍ଦୋ ରାଧା ସରସ ବପୁରାଲଙ୍ଗନସୁଖୋ
ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁ ମେ ॥

ଆଲୋକ ନଗର
ନିଆଳୀ, କଟକ

---

## ନୂଆଦିଲ୍ଲୀ ପଞ୍ଚାୟତିରାଜ ଜିଲ୍ଲା ଓ ବ୍ଲକ୍‌ସ୍ତରୀୟ ଅଧକ୍ଷମାନଙ୍କ ଜାତୀୟ ସମ୍ମିଳନୀରେ ଓଡ଼ିଶାର ୩୦ ଜିଲ୍ଲା ପରିଷଦ ଓ ୩୦ ପଞ୍ଚାୟତ ସମିତି ଅଧକ୍ଷ ଓ ଅଧକ୍ଷାଙ୍କ ଯୋଗଦାନ

ନୂଆଦିଲ୍ଲୀର ବୁରାରୀ ଗ୍ରାଉଣ୍ଡଠାରେ ଗତ ଅପ୍ରେଲ ୨୨ରୁ ୨୪ ତାରିଖ ପର୍ଯ୍ୟନ୍ତ ପଞ୍ଚାୟତିରାଜ ଜିଲ୍ଲା ଓ ବ୍ଲକ୍ ଅଧକ୍ଷ ଓ ଅଧକ୍ଷାମାନଙ୍କ ଜାତୀୟ ସମ୍ମିଳନୀରେ ଯୋଗଦେବାକୁ ଓଡ଼ିଶାର ସମସ୍ତ ଜିଲ୍ଲା ପରିଷଦ ସଭାପତି ଓ ପ୍ରତି ଜିଲ୍ଲାରୁ ଜଣେ ଲେଖାଏଁ ପଞ୍ଚାୟତ ସମିତି ଅଧକ୍ଷ/ଅଧକ୍ଷାଙ୍କୁ ଅଂଶଗ୍ରହଣ କରିବା ପାଇଁ ରାଜ୍ୟ ସରକାର ମନୋନୀତ କରିଛନ୍ତି ।

ଏହି ପ୍ରତିନିଧି ଦଳରେ ମହିଳା, ହରିଜନ, ଆଦିବାସୀ ଓ ପଛୁଆ ବର୍ଗର ଅଧକ୍ଷ/ଅଧକ୍ଷାମାନେ ସାମିଲ ହୋଇଛନ୍ତି । ଏମାନଙ୍କ ଛଡ଼ା କୋର୍ କମିଟିରେ ସ୍ଥାନ ପାଇଥିବା ପଞ୍ଚାୟତ ପ୍ରତିନିଧିମାନଙ୍କୁ ମଧ ପଠାଯାଇଛି । ଏହି ଜାତୀୟ ସମ୍ମିଳନୀରେ ସେମାନଙ୍କର ସୁଚିନ୍ତିତ ଅଭିଭାଷଣ ପ୍ରଦାନ କରିବା ନିମନ୍ତେ ପୁରୀ ଜିଲ୍ଲା ପରିଷଦ ସଭାପତି ଶ୍ରୀ ଶଙ୍କର୍ଷଣ ପରିଡ଼ା, ଯାଜପୁର ଜିଲ୍ଲା ଦଶରଥପୁର ପଞ୍ଚାୟତ ସମିତି ଅଧକ୍ଷା ଶ୍ରୀମତୀ ସଂଯୁକ୍ତା ମହାନ୍ତି ଏବଂ ଅନୁଗୁଳ ଜିଲ୍ଲା ତାଳଚେର ପଞ୍ଚାୟତ ସମିତି ଅନ୍ତର୍ଗତ ଗୋବରା ଗ୍ରାମ ପଞ୍ଚାୟତର ସରପଞ୍ଚ ଶ୍ରୀମତୀ ପ୍ରତିମା ବେହେରାଙ୍କୁ ରାଜ୍ୟ ସରକାର ମନୋନୀତ କରିଛନ୍ତି ।

# ବଙ୍ଗୀୟ ବିଦ୍ୱାନଙ୍କ ଦୃଷ୍ଟିରେ ଓଡ଼ିଶାର ଜୟଦେବ

ତାରାକାନ୍ତ ମହାନ୍ତି

ପୂର୍ବ ଭାରତର ପ୍ରାଚ୍ୟବିତ୍ ଓ ବିଭିନ୍ନ କବିମାନଙ୍କର ମତ ହେଉଛି ଯେ ଜୟଦେବ ଓଡ଼ିଶାର କେନ୍ଦୁବିଲ୍ୱଠାରେ ଦ୍ୱାଦଶ ଶତାବ୍ଦୀରେ ଜନ୍ମଗ୍ରହଣ କରିଥିଲେ । ଏହା ରାଜଧାନୀ ଭୁବନେଶ୍ୱରଠାରୁ ୩୭ କିଲୋମିଟର ବାଲିପାଟଣା ବ୍ଲକ୍‌ର ଅଡ଼ଙ୍ଗପୁର ପଞ୍ଚାୟତରେ ଅବସ୍ଥିତ ।

ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାୟ ୬ ଶହ ବର୍ଷରୁ ଊର୍ଦ୍ଧ୍ୱ ହେବ କେହି କବି ଜୟଦେବଙ୍କୁ ଅନ୍ୟ ରାଜ୍ୟର ବୋଲି ଦାବି କରୁନଥିଲେ ମାତ୍ର ପଶ୍ଚିମବଙ୍ଗର ବନମାଳୀ ଦାସ (୧୮୦୩) ନାମରେ ଜଣେ କବି ଊନବିଂଶ ଶତାବ୍ଦୀରେ ତାଙ୍କ କୃତ 'ଜୟଦେବ ଚରିତ'ରେ ଜୟଦେବଙ୍କୁ ଲକ୍ଷ୍ମଣ ସେନଙ୍କ ରାଜସଭାରେ ଦରବାରୀ କବି ରୂପେ ଉଲ୍ଲେଖ କରିଥିଲେ । ସେ ଆହୁରି ମଧ୍ୟ କାରଣ ନ ଦର୍ଶାଇ ମତବ୍ୟକ୍ତ କରିଥିଲେ ଯେ କବି ଜୟଦେବ ପଶ୍ଚିମବଙ୍ଗର କେନ୍ଦୁଲିଠାରେ ଜନ୍ମ ହୋଇଥିଲେ । ବଙ୍ଗୀୟ ଅଭିଧାନରେ କେନ୍ଦୁଲିର ଅର୍ଥ ପର୍ବପର୍ବାଣି । ବଙ୍ଗୀୟ ରାଜସ୍ୱ ମାନଚିତ୍ରରେ ବୀରଭୂମ ଜିଲ୍ଲାରେ କେନ୍ଦୁଲି ବୋଲି କୌଣସି ଗ୍ରାମ ନାହିଁ ।

ଏପରି ଭ୍ରମାତ୍ମକ ସମ୍ବାଦ ଊନବିଂଶ ଓ ବିଂଶ ଶତାବ୍ଦୀରେ କବି ଓ ଲେଖକମାନଙ୍କୁ ଅଡୁଆରେ ପକାଇ ଦେଇଥିଲା । ଜର୍ଜ କିଟ୍ ନାମକ ଜଣେ ଶ୍ରୀଲଙ୍କାର କବି ବନମାଳୀ ଦାସଙ୍କ ଭ୍ରମାତ୍ମକ ଲେଖାରେ ପ୍ରଭାବିତ ହୋଇ ଏକ ଇଂରାଜୀ କାବ୍ୟ 'ସଙ୍ଗ ଅଫ୍ ଲଭ୍' ଲେଖିଛନ୍ତି ଯେ କବି ଜୟଦେବ ପଶ୍ଚିମବଙ୍ଗର ରାଜା ଲକ୍ଷ୍ମଣ ସେନ୍‌ଙ୍କ ଦରବାରୀ କବି ଥିଲେ ।

ସମ୍ପ୍ରତି ବଙ୍ଗୀୟ ବିଦ୍ୱାନ ଓ ପଣ୍ଡିତମାନେ ସ୍ୱୀକାର କଲେଣି ଯେ ଜୟଦେବ ଓଡ଼ିଶାର । ଫଳରେ ଜୟଦେବ ବିବାଦର ଊର୍ଦ୍ଧ୍ୱରେ ଅଛନ୍ତି । ତାହା ଇଂରାଜୀ ସମ୍ବାଦପତ୍ର ଷ୍ଟେଟସ୍‌ମ୍ୟାନ୍ ଭୁବନେଶ୍ୱର ସଂସ୍କରଣରେ ୧୨.୧୧.୨୦୦୩ରେ ପ୍ରକାଶ ପାଇଛି । ଭୁବନେଶ୍ୱରର ସଂସ୍କୃତି ବିଶ୍ୱବିଦ୍ୟାଳୟ ତରଫରୁ ଅନୁଷ୍ଠିତ ଏକ ଆଲୋଚନାଚକ୍ରରେ କଲିକତାର ବିଦ୍ୱାନମାନେ ମତବ୍ୟକ୍ତ କରିଛନ୍ତି ଯେ କବି ଜୟଦେବ ବଙ୍ଗଳାର ନୁହଁନ୍ତି ସେ ହେଉଛନ୍ତି ଓଡ଼ିଶାର । କଲିକତାର ଗୁରୁ ସଦନ ସଂଗ୍ରହାଳୟର ଅଧୀକ୍ଷକ ଯେ ଗତ ୧୯୭୯ ମସିହାରେ ଡଃ କପିଳା ବାତ୍ସାୟନଙ୍କୁ ଏକ ରିପୋର୍ଟରେ ପ୍ରମାଣ କରି ଜଣାଇ ଥିଲେ ଯେ ପଶ୍ଚିମବଙ୍ଗର ବୀରଭୂମ ଜିଲ୍ଲାର କେନ୍ଦୁବିଲ୍ୱ ଗ୍ରାମ କବି ଜୟଦେବଙ୍କର ଜନ୍ମସ୍ଥାନ ନୁହେଁ । ପ୍ରଫେସର ସତ୍ୟକାମ ସେନ୍‌ଗୁପ୍ତ ମତପୋଷଣ କଲେ ଯେ କେନ୍ଦୁଲି ଗ୍ରାମ ହେଉଛି ପୁରୀ ଜିଲ୍ଲାର ପ୍ରାଚୀନଦୀ କୂଳରେ ଏକ ଗ୍ରାମ, ଯେଉଁଠି କବି ଜୟଦେବ ଜନ୍ମଗ୍ରହଣ କରିଥିଲେ । ଏହି ଦୁଇଜଣ ପଣ୍ଡିତ ସେମାନଙ୍କର ମତକୁ ସାବ୍ୟସ୍ତ କରିବା ପାଇଁ ବିଭିନ୍ନ ସାମାଜିକ - ସାଂସ୍କୃତିକ ଦିଗକୁ ଆଧାର କରି ମତବ୍ୟକ୍ତ କରିଥିଲେ ଯେ କବି ଜୟଦେବ ହେଉଛନ୍ତି ଓଡ଼ିଶାର କବି ।

ଗୀତଗୋବିନ୍ଦ ଗାନ ପୁରୀ ଶ୍ରୀମନ୍ଦିରରେ ନରସିଂହ ଦେବଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା । ପରେ ଗଜପତି ପ୍ରତାପରୁଦ୍ର ଦେବ ଏକ ଶିଳାଲିପିରେ ଆଦେଶ ଦେଇଥିଲେ ଯାହା ସମ୍ପ୍ରତି ଜୟ-ବିଜୟ ଦ୍ୱାରରେ ରହିଛି - 'The Geeta Govinda of Bada Thakur should be sung and danced at the time of offering to the Lord' ଅର୍ଥାତ୍ ବଡ଼ ଠାକୁରଙ୍କ ପହୁଡ଼ ନୀତିବେଳେ ଗୀତଗୋବିନ୍ଦ ବୋଲାଯିବ ଓ ମାହାରୀମାନେ ନୃତ୍ୟ ପରିବେଷଣ କରିବେ । ଭାରତର ଅନ୍ୟ କେଉଁ ମନ୍ଦିରରେ ଗୀତଗୋବିନ୍ଦ ଆବୃତ୍ତି ଓ ମାହାରୀ ନୃତ୍ୟ ପ୍ରଦର୍ଶନ ହୁଏ ନାହିଁ । ଏଥିରୁ ନିଶ୍ଚିତ ଭାବେ ଜଣାଯାଏ ଯେ ଉତ୍କଳର କୌଣସି କବି ଗଜପତିଙ୍କ ପୃଷ୍ଠପୋଷକତାରେ ଶ୍ରୀଜଗନ୍ନାଥଙ୍କ ନିକଟରେ ଆବୃତ୍ତି ହେବା ପାଇଁ ଗୀତଗୋବିନ୍ଦ ଲେଖିଥିଲେ । ଏଥିରୁ ପ୍ରମାଣ ମିଳେ ଯେ କବି ଜୟଦେବ ଗୀତଗୋବିନ୍ଦ ରଚନା କରିଥିଲେ ।

ଅନ୍ୟ ଏକ ପ୍ରମାଣ ହେଉଛି ଯେ ରାତିରେ ଶ୍ରୀଜଗନ୍ନାଥଙ୍କୁ ଯେଉଁ ଖଣ୍ଡୁଆରେ ଆଚ୍ଛାଦିତ କରାଯାଏ, ସେହି ଖଣ୍ଡୁଆରେ ଦେହସାରା ଗୀତଗୋବିନ୍ଦ ଲେଖାଯାଇ ବୁଣାହୁଏ ଓ ଏହା କଟକ ଜିଲ୍ଲାର ନୂଆପାଟଣା ଓ ମାଣିଆବନ୍ଧରେ ସ୍ଥାନୀୟ ତନ୍ତୀମାନଙ୍କଦ୍ୱାରା ବୁଣାଯାଇଥାଏ ।

ଡି-୩୨୫, ଷ୍ଟାର ସିଟି
ପଟିଆ, ଭୁବନେଶ୍ୱର

# ଶ୍ରୀଜୟଦେବକୃତ ଶ୍ରୀଗୀତଗୋବିନ୍ଦ

ନମିତା ଶତପଥି



**ଶ୍ରୀ**ଜୟଦେବଙ୍କ ପ୍ରଣୀତ 'ଶ୍ରୀଗୀତଗୋବିନ୍ଦ' ଓଡ଼ିଶାର ପ୍ରତ୍ୟେକ ଘରେ ସୁପରିଚିତ । ଶ୍ରୀଜୟଦେବ ଥିଲେ ଦ୍ୱାଦଶ ଶତାବ୍ଦୀର କବି । ପବିତ୍ର ପ୍ରାଚୀନଦୀ ତଟସ୍ଥ କେନ୍ଦୁବିଲ୍ୱ (କେନ୍ଦୁଲି) ଗ୍ରାମରେ ମହାନ କବି ଶ୍ରୀଜୟଦେବ ଜନ୍ମ ଗ୍ରହଣ କରିଥିଲେ । ଶ୍ରୀଜୟଦେବ ସଂସ୍କୃତ ଭାଷାରେ ଅଗାଧ ପାଣ୍ଡିତ୍ୟ ଲାଭ କରିଥିଲେ । 'ଜୟ ଜଗଦୀଶ ହରେ' କବି ଶ୍ରୀଜୟଦେବ ଥିଲେ କୃଷ୍ଣଗତ ପ୍ରାଣ । ତେଣୁ ପ୍ରାଚୀ ତଟବର୍ତ୍ତୀ ନିଆଳୀ ମାଧବ ମନ୍ଦିରସ୍ଥ ଶ୍ରୀବିଗ୍ରହ ମାଧବଙ୍କୁ ନିଜର ଇଷ୍ଟ ଦେବତା ରୂପେ ଗ୍ରହଣ କରି ପରିଶେଷରେ ସକଳ ଜଗତର ଆଧାର ଚିଦାନନ୍ଦମୟ ଅଚିନ୍ତ୍ୟ ସ୍ୱରୂପ ଶ୍ରୀଜଗନ୍ନାଥଙ୍କ ପଦାରବିନ୍ଦରେ ନିଜକୁ ସେ ସମର୍ପଣ କରି ଦେଇଥିଲେ । ସେଥିପାଇଁ ହିଁ ତାଙ୍କର ଭାବଧାରାରେ ପ୍ରତିଫଳିତ ହୋଇଥିଲା ନୈଷଧ କାବ୍ୟର ପଦଲାଳିତ୍ୟ ଏବଂ ତା' ସହିତ ଶ୍ରୀଜୟଦେବ ତାଙ୍କର ରଚିତ 'ଶ୍ରୀଗୀତଗୋବିନ୍ଦ' ମାଧ୍ୟମରେ ସଂସ୍କୃତ ଭାଷାକୁ ସାବଲୀଳ ଓ ହୃଦୟଗ୍ରାହୀ କରିବାକୁ ଆପ୍ରାଣ ଉଦ୍ୟମ କରିଥିଲେ ।

ପ୍ରାୟ ଏଗାରଶହ ଶତାବ୍ଦୀର ମଧ୍ୟଭାଗରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ ଜାତିର ଗୌରବ ଭକ୍ତ ମହାକବିରାଜ ଶ୍ରୀଜୟଦେବ ନିଜର ସାଧନାପୀଠ ଭାବରେ ଗ୍ରହଣ କରି ନେଇଥିଲେ । ଜଣାଯାଏ ଯେ, ଉକ୍ତ କ୍ଷେତ୍ରରେ ଦିନେ ଧ୍ୟାନ ଅବସ୍ଥାରେ ଶ୍ରୀଜୟଦେବଙ୍କ କଣ୍ଠରୁ ସ୍ୱତଃ ସ୍ଫୁରିତ ହୋଇଥିଲା । ଶ୍ରୀଗୀତଗୋବିନ୍ଦର ମଙ୍ଗଳାଚରଣ ଏବଂ ତା'ପରେ ପରେ ସେ ରଚନା କରିଥିଲେ ଶୃଙ୍ଗାର ରସର ଅଦ୍ୱିତୀୟ ମହାଶାସ୍ତ୍ର ଶ୍ରୀଗୀତଗୋବିନ୍ଦ, ଯାହାଫଳରେ ଉକ୍ତ ମଧୁର କୋମଳ କାନ୍ତ ପଦାବଳୀର ମଧୁ ଝଙ୍କାର ଝଙ୍କୃତ ହୋଇ ସମଗ୍ର ଜଗତକୁ ସ୍ତବ୍ଧ କରି ଦେଇଥିଲା ।

ଭାରତୀୟ ସଂସ୍କୃତିରେ ଦ୍ୱାଦଶ ଶତାବ୍ଦୀ ପରଠାରୁ ବୈଷ୍ଣବ ଦର୍ଶନ ଓ ଧାର୍ମିକ ଚିନ୍ତାଧାରାକୁ ଭିତ୍ତିକରି ଯେଉଁ ଆଧ୍ୟାତ୍ମିକ ଚେତନା ବା ଭକ୍ତିବାଦର ସୂତ୍ରପାତ ହୋଇଥିଲା, ସେଥିରେ ଉତ୍କଳୀୟ ମହାକବି ଶ୍ରୀଜୟଦେବ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଭକ୍ତି ଆନ୍ଦୋଳନ ମୁଖ୍ୟତଃ ବୈଷ୍ଣବ ଦର୍ଶନ ଓ କୃଷ୍ଣପ୍ରେମକୁ ଭିତ୍ତିକରି ପ୍ରସାର ଲାଭ କରିଥିଲା । ବୈଷ୍ଣବ ଧର୍ମରେ ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କୁ ଏକ ଓ ଅଭିନ୍ନ ରୂପେ ପରିକଳ୍ପନା କରାଯାଉଥିବାରୁ ମହାକବି ଶ୍ରୀଜୟଦେବ ଶ୍ରୀଜଗନ୍ନାଥଙ୍କୁ ରାଧାମାଧବଙ୍କ ମିଳିତ ବିଗ୍ରହ ରୂପେ ଗ୍ରହଣ କରିଛନ୍ତି । ଭାରତୀୟ ଆଧ୍ୟାତ୍ମିକ ସଂସ୍କୃତିର ଏକ ମହନୀୟ ପରମ୍ପରାକୁ ଆଧାର କରି ଭକ୍ତକବି ଶ୍ରୀଜୟଦେବ ରାଧା ମାଧବଙ୍କର ମଧୁର ଓ ଅପ୍ରାକୃତ ପ୍ରେମଲୀଳାକୁ ସାବଲୀଳ ଓ ସୁଲଳିତ ପଦାବଳୀ ମାଧ୍ୟମରେ ଶ୍ରୀଗୀତଗୋବିନ୍ଦରେ ଲିପିବଦ୍ଧ କରିଥିଲେ । କେବଳ ସେତିକି ନୁହେଁ ମହାକବି ଶ୍ରୀଜୟଦେବ ପ୍ରକୃତି ଓ ପୁରୁଷଙ୍କ ଏକତ୍ର ଅବସ୍ଥାକୁ ଦେଖିପାରିଥିଲେ । ତେଣୁ ସେ ପ୍ରକୃତି ଓ ପୁରୁଷର ମହାମିଳନର ବର୍ଣ୍ଣନା

ଶ୍ରୀଗୀତଗୋବିନ୍ଦରେ ଲିପିବଦ୍ଧ କରିଛନ୍ତି । ବିଶେଷତଃ 'ଶ୍ରୀଗୀତଗୋବିନ୍ଦ'ରେ ଶ୍ରୀଜଗନ୍ନାଥଙ୍କୁ ଶ୍ରୀକୃଷ୍ଣଙ୍କ ତତ୍ତ୍ୱ ଓ ଆଦର୍ଶରେ ଲିପିବଦ୍ଧ କରାଯାଇଥିବା ବହୁ କ୍ଷେତ୍ରରେ ଲକ୍ଷ୍ୟ କରାଯାଏ ।

'ଶ୍ରୀଗୀତଗୋବିନ୍ଦ'ରେ ବର୍ଣ୍ଣିତ ଦଶାବତାର ଓ ମଙ୍ଗଳଗୀତିକା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମଙ୍ଗଳ ଆଳତୀ ସମୟରେ ଭକ୍ତଗଣଙ୍କ କଣ୍ଠରେ ଅପୂର୍ବ ମୂର୍ଚ୍ଛନା ସୃଷ୍ଟି କରିଥାଏ । କେବଳ ମଙ୍ଗଳ ଆଳତୀ ସମୟରେ ନୁହେଁ, ଶ୍ରୀମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିରର ଦୁଆର ଫିଟା ନୀତିଠାରୁ ଆରମ୍ଭ କରି ଦୁଆର ମୁଦା ପର୍ଯ୍ୟନ୍ତ ପ୍ରତ୍ୟେକ ରୀତି ନୀତି ବେଳେ ଏହି ପଦାବଳୀକୁ ଗାନ କରାଯାଇଥାଏ । ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିରକୁ ଛାଡ଼ି ଦେଲେ ଓଡ଼ିଶା ମଧରେ ଓ ବାହାରେ ଗଢ଼ି ଉଠିଥିବା ପ୍ରତ୍ୟେକ ଶ୍ରୀଜଗନ୍ନାଥ ମନ୍ଦିର ତଥା ମଣ୍ଡପମାନଙ୍କରେ ମଧ ଏହାକୁ ଗାନ କରାଯାଇଥାଏ ।

ଐତିହାସିକମାନଙ୍କ ଗବେଷଣାରୁ ଜଣାଯାଇଥାଏ ଯେ ତତ୍‌କାଳୀନ କଳିଙ୍ଗ ସମ୍ରାଟ ଲାଙ୍ଗୁଳା ନରସିଂହ ଦେବଙ୍କ ସମୟରେ ଶ୍ରୀଗୀତଗୋବିନ୍ଦକୁ ରାଜ ମାନ୍ୟତା ଦିଆଯାଇ ଶ୍ରୀମନ୍ଦିରରେ ଶ୍ରୀଜୀଉମାନଙ୍କ ସମ୍ମୁଖରେ ଗାନ କରିବାର ପରମ୍ପରା ସୃଷ୍ଟି ହୋଇଥିଲା ଏବଂ ଶ୍ରୀଗୀତଗୋବିନ୍ଦ ବର୍ଣ୍ଣିତ କାବ୍ୟାବଳୀ ସାଧାରଣ ଜନତାର ବୋଧଗମ୍ୟ ହେଉ ନଥିଲେ ମଧ ଏହାର ପଦଲାଳିତ୍ୟରେ ଆକୃଷ୍ଟ ହୋଇ ଗୃହ ମଧରେ ଲଳନାଠାରୁ ଆରମ୍ଭ କରି ବିଲରେ ଚାଷୀ ମୂଲିଆ ପର୍ଯ୍ୟନ୍ତ ସମସ୍ତେ ଗାଇବାର ଦେଖିବାକୁ ମିଳିଥିଲା । ଶ୍ରୀଜୟଦେବଙ୍କ ପଦାଙ୍କ ଅନୁସରଣ କରି ସମସାମୟିକ ଓ ପରବର୍ତ୍ତୀ ଓଡ଼ିଆ କାବ୍ୟ କବିତା ଛନ୍ଦୋମୟ, ଭାବମୟ, ରସମୟ ଓ ଗୀତିମୟ ହୋଇ କାବ୍ୟକାରମାନଙ୍କ ଲେଖନୀରେ ଝଙ୍କୃତ ହେବାକୁ ଲାଗିଲା ।

ଭକ୍ତକବି ଶ୍ରୀଜୟଦେବଙ୍କ ରଚିତ ପ୍ରେମ, ଭକ୍ତି ଓ ଶୃଙ୍ଗାରରସର ଅଦ୍ୱିତୀୟ ମହାଶାସ୍ତ୍ର 'ଶ୍ରୀଗୀତଗୋବିନ୍ଦ'ରେ ରାଧାକୃଷ୍ଣଙ୍କ ମାଧୁର୍ଯ୍ୟ ପ୍ରେମର ଯେଉଁ ସୂକ୍ଷ୍ମ ଓ ତାତ୍ତ୍ୱିକ ବର୍ଣ୍ଣନା ରହିଛି ତାହା ଭାରତୀୟ ଆଧ୍ୟାତ୍ମିକ ସାହିତ୍ୟର ଏକ ଅମୂଲ୍ୟ ସମ୍ପଦ ।

ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ବିଜୁ ପଟ୍ଟନାୟକ ବିଜ୍ଞାନ ଓ ଶିକ୍ଷା ମହାବିଦ୍ୟାଳୟ
ଭୁବନେଶ୍ୱର

# କେନ୍ଦ୍ରକୁ ରାଜ୍ୟ ସରକାରଙ୍କ ପତ୍ର : ସମ୍ବିଧାନରେ ଓଡ଼ିଶାର ନାମ ବିକୃତ ନହେଉ

ସମ୍ବିଧାନରେ ଓଡ଼ିଶାର ନାମ ବିକୃତ ହୋଇ ଲେଖା ହୋଇଥିବାରୁ ଏହାର ସଂଶୋଧନ ପାଇଁ ବିଧିବଦ୍ଧ ପ୍ରସ୍ତାବ ପଠାଇବାକୁ କହି ରାଜ୍ୟ ଘରୋଇ ବିଭାଗ ପକ୍ଷରୁ ଲେଖାଯାଇଥିବା ଚିଠିକୁ କେନ୍ଦ୍ର ଫେରାଇ ଦେଇଛି । ଏ ସମ୍ପର୍କରେ ରାଜ୍ୟ ସରକାରଙ୍କ ପକ୍ଷରୁ କେନ୍ଦ୍ର ସହ ଆଲୋଚନା କରାଯିବା ପରେ ରାଜ୍ୟର ନାମ ସଂଶୋଧନ ପାଇଁ ସମ୍ବିଧାନ ସଂଶୋଧନର ଆବଶ୍ୟକତା ଥିବାରୁ କ୍ୟାବିନେଟ୍‌ର ଅନୁମୋଦନ ନେଇ ବିଧାନସଭାରେ ସର୍ବସମ୍ମତ ପ୍ରସ୍ତାବ ଗ୍ରହଣ କରି ପାର୍ଲାମେଣ୍ଟକୁ ପଠାଇବା ଲାଗି କୁହାଯାଇଛି । ଅପଭ୍ରଂଶ ହୋଇ ଚାଲିଥିବା ଓଡ଼ିଶାର ନାମକୁ ପରିବର୍ତ୍ତନ କରିବା ପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ ଯେଉଁ ଚିଠି ଗତବର୍ଷ ଲେଖାଯାଇଥିଲା ତାହାକୁ କେନ୍ଦ୍ର ଫେରାଇ ଦେଇଥିବା ନେଇ କେତେକ ସମ୍ବାଦପତ୍ରର ସଂସ୍କରଣରେ 'କେନ୍ଦ୍ର ଫେରାଇଦେଲା ଚିଠି' ଶୀର୍ଷକ ଖବରରେ ପ୍ରକାଶ ପାଇଥିଲା । ଘରୋଇ ସଚିବ ତରୁଣକାନ୍ତି ମିଶ୍ର ଏ ସମ୍ପର୍କରେ ସଚିବାଳୟଠାରେ ସାମ୍ବାଦିକମାନଙ୍କୁ ସୂଚନା ଦେଇ କହିଥିଲେ ଯେ, ସେ ଦୁଇଦିନ ତଳେ ଦିଲ୍ଲୀ ଗସ୍ତରେ ଯାଇଥିଲେ । ସେଠାରେ ଓଡ଼ିଶା ନାମ ସଂଶୋଧନ ନେଇ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରଣାଳୟର ଅତିରିକ୍ତ ସଚିବ ରାଜୁ ଅଗ୍ରୱାଲ ଓ ଶଶୀଭୂଷଣଙ୍କ ସହ ଆଲୋଚନା କରିଥିଲେ । ଆଲୋଚନା ସମୟରେ ସମ୍ବିଧାନ ସଂଶୋଧନ ପାଇଁ ଉପରୋକ୍ତ ଭାବେ ପଦକ୍ଷେପ ନେଇ ପ୍ରସ୍ତାବ ପଠାଇବାକୁ କୁହାଯାଇଥିଲା । ଏହି ଅନୁଯାୟୀ ସରକାରଙ୍କ ପକ୍ଷରୁ ଆବଶ୍ୟକ ପଦକ୍ଷେପ ନିଆଯିବ । ଦୁର୍ଭାଗ୍ୟର ବିଷୟ ୧୯୫୦ ମସିହା ସମ୍ବିଧାନ ପ୍ରଣୟନ ହେବା ସମୟରେ ବିଭିନ୍ନ ରାଜ୍ୟର ନାମ ଉଲ୍ଲେଖ ରହିଥିଲା । ହିନ୍ଦୀରେ 'ଓଡ଼ିଶା'କୁ 'ଉଡ଼ିସା' ଏବଂ 'ଓଡ଼ିଆ'କୁ 'ଉଡ଼ିୟା' ଲେଖାଯାଇଛି । ସେହିଭଳି ଇଂରାଜୀରେ ମଧ ଓଡ଼ିଶାକୁ 'ଓରିସା' ଲେଖାଯାଇଛି, ଏହାଫଳରେ ରାଜ୍ୟ ବାହାରେ ଓଡ଼ିଶା ଅପଭ୍ରଂଶ ହୋଇ କଦର୍ଥ ଭାବରେ ଚିତ୍ରଣ ହୋଇଆସୁଛି । ସମ୍ବିଧାନରେ ଓଡ଼ିଶାର ନାମ ତ୍ରୁଟି ଥିବାରୁ ଏହାର ସଂଶୋଧନ କେବଳ ପାର୍ଲାମେଣ୍ଟରେ ହୋଇପାରିବ । ସମ୍ବିଧାନ ସଂଶୋଧନ ଲାଗି ରାଜ୍ୟ ସରକାରଙ୍କୁ ଏହି ପ୍ରସ୍ତାବ ପଠାଇବାକୁ ପଡ଼ିବ ।

# ଗୀତଗୋବିନ୍ଦରେ ସୌନ୍ଦର୍ଯ୍ୟବୋଧ

ଡଃ ଭାଗ୍ୟଲିପି ମଲ୍ଲ





ଯୁଗେ ଯୁଗେ ଓଡ଼ିଶା ସୃଜନଶୀଳ କଳା ଓ କବିତା ସମ୍ଭାରରେ ପରିପୂର୍ଣ୍ଣ । ଏହି ଓଡ଼ିଶାର ବିଶ୍ୱବିଖ୍ୟାତ କବି ଜୟଦେବଙ୍କ ଗୀତଗୋବିନ୍ଦ ଏକ ଅନବଦ୍ୟ ଅମ୍ଳାନ କୃତି । ଏହା ଦ୍ୱାଦଶ ଶତାବ୍ଦୀରେ ରଚିତ । ଏହି ସୁମଧୁର ଗୀତିମାଳା ହେଉଛି ଜଗତର ନାଥ ଜଗନ୍ନାଥଙ୍କୁ କବି ଜୟଦେବଙ୍କ ଭକ୍ତିପୂତ ପୁଷ୍ପାଞ୍ଜଳି । ନିରବଚ୍ଛିନ୍ନ ଭାବରେ ବଡଦେଉଳରେ ଗୀତଗୋବିନ୍ଦ ଗାନ ଦ୍ୱାଦଶ ଶତାବ୍ଦୀରୁ ପ୍ରଚଳିତ ହୋଇ ଆସୁଛି । ଅନେକ ବିଦ୍ୱାନ ମନେ କରନ୍ତି, ଦେବଦାସୀ ଓ ମାହାରୀ ପ୍ରଥା ସେକାଳରୁ ପୁରୀ ମନ୍ଦିରରେ ପ୍ରତିଷ୍ଠିତ ହୋଇଛି ।

ଏହି ଅମର କାବ୍ୟ ୭୨ଟି ଶ୍ଳୋକରେ ରଚିତ । ଏହାକୁ ୧୨ଟି ସର୍ଗ ଓ ୨୪ଟି ଗୀତରେ କବି ଶ୍ରେଣୀଭୁକ୍ତ କରିଛନ୍ତି । ଏହାର ରଚନା କାଳରୁ ଏହି ମଧୁମୟ ସଂଗୀତର ଗୁଂଜରଣ ସାରା ଭାରତରେ ପ୍ରତିଧ୍ୱନିତ ହୋଇଥିଲା । ପ୍ରସିଦ୍ଧ ସାହିତ୍ୟ ଗବେଷିକା ବାରବାରା ମିଲରଙ୍କ ମତରେ ଜୟଦେବଙ୍କ ଅଦ୍ୱିତୀୟ ଓ ଅଭିନବ କୃତି ଗୀତଗୋବିନ୍ଦ ବିଶ୍ୱ ସାହିତ୍ୟର ଏକ ଅଂଶବିଶେଷ । ଏହା କୌଣସି ଭୌଗୋଳିକ ସୀମା ମଧ୍ୟରେ ଆବଦ୍ଧ ନୁହେଁ । ଯଦିଓ ଏହା ଭାରତର ପ୍ରାଚ୍ୟ ଭୁଖଣ୍ଡରେ ସୃଷ୍ଟି ହୋଇଛି ତଥାପି ଏହାର ପ୍ରଭାବ ସମଗ୍ର ଏସିଆ ଓ ୟୁରୋପରେ ବ୍ୟାପ୍ତ । ଗୁଜରାଟର ୧୭୦୦ ମସିହାର ଏକ ମନ୍ଦିରରେ ଏହାର କିଛି ଅଂଶ ଖୋଦିତ ହୋଇଛି । ଭାରତର ପ୍ରତ୍ୟେକ ପ୍ରାନ୍ତରେ ଏହାର ଟୀକା କରାଯାଇଛି । ବଙ୍ଗ, ବିହାର ଓ ଓଡ଼ିଶାର ଭକ୍ତି ସଂଗୀତ ଓ ସାହିତ୍ୟରେ ଅଦ୍ୟାବଧି ଏହା ଜୀବନ୍ତ । ବର୍ତ୍ତମାନ ସୁଦ୍ଧା ଇଂରାଜୀ, ଋଷ, ଫରାସୀ ଓ ଜର୍ମାନୀ ଭାଷାରେ ଏହାକୁ ଅନୁବାଦ କରାଯାଇଛି । ଭାସ୍ତବିକ ଏବେ ଗୀତଗୋବିନ୍ଦ ସାରା ବିଶ୍ୱରେ ଏକ ମୁଗ୍ଧ ଉଚ୍ଚାରଣ ।

କବି ଜୟଦେବଙ୍କ ଜନ୍ମ ନକ୍ଷତ୍ର ଓ ଜନ୍ମସ୍ଥଳୀକୁ ନେଇ ଅନେକ ଆଲୋଚନା ହୋଇଛି । ସାରା ଭାରତର ପଣ୍ଡିତମାନେ ପ୍ରାୟତଃ ଏକମତ ଯେ ପବିତ୍ର ଉତ୍କଳ ଭୂମି ଜୟଦେବଙ୍କର ଜନ୍ମସ୍ଥଳୀ ଓ ତାଙ୍କର ସମୟକାଳ ଦ୍ୱାଦଶ ଶତାବ୍ଦୀ । ସେ ନିଜେ ତାଙ୍କ କବିତାରେ ଉଲ୍ଲେଖ କରିଛନ୍ତି ଯେ ସେ କେନ୍ଦୁବିଲ୍ୱଠାରେ ଜନ୍ମଗ୍ରହଣ କରିଥିଲେ । କେନ୍ଦୁବିଲ୍ୱ ଅଧୁନା ଖୋର୍ଦ୍ଧା ଜିଲ୍ଲାର ପ୍ରାଚୀ ଅବବାହିକାର କେନ୍ଦୁଲି ଗାଁ ବୋଲି ଚିହ୍ନିତ ହୋଇ ସାରିଛି । ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟରେ କେନ୍ଦୁବିଲ୍ୱର ନାମ ବିନ୍ଦୁ ବିଲ୍ୱ ବା ତେନ୍ଦୁବିଲ୍ୱ ବୋଲି ଉଲ୍ଲେଖ କରାଯାଇଛି ।

କେନ୍ଦୁଲି ଗାଁ ଅତୀତରେ ଏକ ବ୍ରାହ୍ମଣ ଶାସନ ଥିଲା । ଏଠାରୁ ନରସିଂହ ଦେବଙ୍କର ଏକ ତାମ୍ର ଫଳକ ମିଳିଛି । କେନ୍ଦୁଲିର ଦେବୀ ମନ୍ଦିରର ମୁଖଶାଳାରେ ଜୟଜଗଦୀଶ ହରେ ଦ୍ୱାଦଶ ଶତାବ୍ଦୀର ଅକ୍ଷର ଶୈଳୀରେ ଲିପିବଦ୍ଧ ହୋଇଛି । ଏହାଛଡା ବୈଷ୍ଣବ ଧର୍ମ ଓ ମାଧବ ଉପାସନାର ଅନେକ ନିଦର୍ଶନ ଏଠାରୁ ମିଳିଛି । ଅନେକ ଦଶାବତାର ମୂର୍ତ୍ତି ମଧ୍ୟ ସେ ଅଞ୍ଚଳରୁ ଆବିଷ୍କୃତ ହୋଇଛି । ଏସବୁ ଉତ୍କଳୀୟ ସାଂସ୍କୃତିକ ସମ୍ଭାର ସୂଚାଇ ଦିଏ କବି ଜୟଦେବ ସାଧକ ଉପାସନାର ପୀଠ ପ୍ରାଚୀ ଅବବାହିକାରୁ ପ୍ରସ୍ଫୁଟିତ ହୋଇଥିଲା ।

ଦଶାବତାର ତତ୍ତ୍ୱ ଗୀତଗୋବିନ୍ଦର ଆଉ ଏକ ଆକର୍ଷଣ । ବିଭିନ୍ନ ମନ୍ଦିର ଗାତ୍ରରେ ଅଦ୍ୟାବଧି ଆମେ ଦଶାବତାର ମୂର୍ତ୍ତି ସ୍ଥାପତ୍ୟର ନିଦର୍ଶନ ଦେଖିବାକୁ ପାଉ । ପଶ୍ଚିମ ମହାନଦୀ ଅବବାହିକା ଯଥା ଦକ୍ଷିଣ କୋଶଳ ଓ ଛତିଶଗଡ ଅଞ୍ଚଳରେ ମଧ୍ୟ ଏହାର ଅନେକ ଦୃଷ୍ଟାନ୍ତ ରହିଛି । ସୋମବଂଶୀ ରାଜା ଶିବଗୁପ୍ତ ବାଲାର୍ଜ୍ଜୁନ

(୬୫୦-୮୦୭ ଏଡି) ରାୟପୁର ଜିଲ୍ଲାର ଶିରପୁରଠାରେ ତାଙ୍କ ରାଜତ୍ୱ କାଳରେ ଲକ୍ଷ୍ମଣେଶ୍ୱର ମନ୍ଦିର ତିଆରି କରିଥିଲେ ଓ ଏହାର ଦ୍ୱାରବନ୍ଧ ଉପରେ ଦଶାବତାର ମୂର୍ତ୍ତି ଖୋଳାଇ ଥିଲେ । ବଲାଙ୍ଗୀର ଜିଲ୍ଲାର ମୁଇଁଢଳାଠାରେ ଦୁଇଟି ବିଷ୍ଣୁ ପ୍ରତିମାରେ ମଧ୍ୟ ଅଷ୍ଟମ-ନବମ ଶତାବ୍ଦୀର ଦଶାବତାର ମୂର୍ତ୍ତି ଦେଖାଯାଏ । ଏହିପରି ବଲାଙ୍ଗୀର ଜିଲ୍ଲାର ରାଣୀପୁରଠାରେ ସୋମବଂଶୀ ରାଜାମାନେ ଇନ୍ଦ୍ରଲାଟ ଇଷ୍ଟକ ମନ୍ଦିର ନିର୍ମାଣ କରି ଗୋପାଳ ମୂର୍ତ୍ତି ସ୍ଥାପନ କରି ଥିବାର ଜଣାଯାଏ । ଏହି ମନ୍ଦିରର ଦ୍ୱାରବନ୍ଧରେ ଦଶାବତାର ମୂର୍ତ୍ତି ସୁଶୋଭିତ ଥିଲା । ବୌଦ୍ଧ ଜିଲ୍ଲାର ଗନ୍ଧରାଡି ଠାରେ ସୋମବଂଶୀ ରାଜାଙ୍କର ସାମନ୍ତ ରାଜା ଭଞ୍ଜ-ରାଜା ଶତ୍ରୁଭକ୍ଷି ଗୋଟିଏ ମଣ୍ଡପରେ ଶିବ-ସିଦ୍ଧେଶ୍ୱର ଓ ନୀଳମାଧବ ବିଷ୍ଣୁ ମନ୍ଦିର ନିର୍ମାଣ କରାଇଥିଲେ । ଉକ୍ତ ମନ୍ଦିର ଗାତ୍ରରେ ଅନେକ ଦଶାବତାର ମୂର୍ତ୍ତି ଦେଖାଯାଏ । ଭୁବନେଶ୍ୱରର ବୈତାଳ ମନ୍ଦିର ଗାତ୍ରରେ ମଧ୍ୟ କେତୋଟି ଦଶାବତାର ମୂର୍ତ୍ତି ଖୋଦାଇ ହୋଇଥିବାର ଜଣାଯାଏ । ପ୍ରାଚୀ ନଦୀର ଅବବାହିକା ମାଧବ ଉପାସନା ପୀଠରେ ପରିପୂର୍ଣ୍ଣ । ଗୋପୀନାଥ ଧର୍ମ ମଧ୍ୟ ଏଠାରେ ବହୁଳ ଭାବରେ ପ୍ରଚଳିତ ଥିଲା । ଜୟଦେବଙ୍କ ବହୁ ପୂର୍ବରୁ ଓଡ଼ିଶାରେ ପ୍ରଚଳିତ ଦଶାବତାର ଉପାସନା ଜୟଦେବଙ୍କ ଲେଖନୀକୁ ବହୁଳ ଭାବରେ ପ୍ରଭାବିତ କରିଥିବା ଜଣାପଡେ ।

ଏହି କାବ୍ୟ ଓଡ଼ିଆ କଳା ପରମ୍ପରାକୁ ଅନେକ ନୂତନ ଦିଗଦର୍ଶନ ଦେଇଛି । ଏହାର ଝଲକ ଆମେ ବର୍ତ୍ତମାନ ଗୁଜରାଟଠାରୁ ଆସାମ ପର୍ଯ୍ୟନ୍ତ ଓ କେରଳଠାରୁ କାଶ୍ମୀର ପର୍ଯ୍ୟନ୍ତ ବ୍ୟାପ୍ତ ଥିବାର ଦେଖିବାକୁ ପାଉ । ଏହାର ସୃଜନଶୀଳ ସୂକ୍ଷ୍ମ ଚିତ୍ର କଳା ନୈପୁଣ୍ୟକୁ ଅନେକ ନୂତନ ଖୋରକ ଯୋଗାଇଛି । ଏହାର ପ୍ରଭାବ ଆସାମୀ, ଗୁଜରାଟୀ, କାଙ୍ଗରା ରାଜସ୍ଥାନୀ ଚିତ୍ରପଟ୍ଟରେ ଦେଖିବାକୁ ମିଳେ । ଏପରିକି ନେପାଳ ଓ ମଣିପୁରୀ ନୃତ୍ୟ ପରମ୍ପରାରେ ଗୀତ ଗୋବିନ୍ଦର ଧ୍ୱନି ପ୍ରତିଧ୍ୱନିତ ହୋଇଛି । ଓଡ଼ିଶାର ଓଡ଼ିଶୀ ନୃତ୍ୟ ଗୀତଗୋବିନ୍ଦ ତତ୍ତ୍ୱରେ ଅତ୍ୟନ୍ତ ସମୃଦ୍ଧ । ତାଳପତ୍ର ପୋଥି ସମ୍ଭାର ଓଡ଼ିଶାର ଏକ ପ୍ରାଚୀନ କଳା ପରମ୍ପରା । ଚିତ୍ରିତ ତାଳପତ୍ର ପୋଥିରେ ଗୀତଗୋବିନ୍ଦର ଅନେକ କଥାବସ୍ତୁ ଜୀବନ୍ତ ଭାବରେ ଫୁଟି ଉଠିଛି । ଏହାର ଅନେକ ନମୁନା ବର୍ତ୍ତମାନ ରାଜ୍ୟ ସଂଗ୍ରହାଳୟରେ ସ୍ଥାନ ପାଇଛି । ବିଭିନ୍ନ ରଙ୍ଗବେରଙ୍ଗର ତରଙ୍ଗାୟିତ ରାଧା-କୃଷ୍ଣ ଚିତ୍ରାବଳୀ ଆଦି ମଧ୍ୟ ଦର୍ଶକଙ୍କୁ ବିସ୍ମୟାଭିଭୁତ କରେ ।

ଆଦିମ କାଳରୁ ସୂକ୍ଷ୍ମ ଚିତ୍ର ଭାସ୍କର୍ଯ୍ୟରେ ଓଡ଼ିଶା ରୁଦ୍ଧିମନ୍ତ । ପ୍ରାଗ୍ ଐତିହାସିକ ଯୁଗର ଚିତ୍ରାବଳୀ ଆଦି ମଧ୍ୟ ଝାରସୁଗୁଡା, ସୁନ୍ଦରଗଡ ଓ କଳାହାଣ୍ଡି ଜିଲ୍ଲାର ପାହାଡ ଗାତ୍ରରେ ସୁଶୋଭିତ । କେନ୍ଦୁଝର ଜିଲ୍ଲାର ସୀତାବାଂଝିସ୍ଥିତ ଚିତ୍ରାବଳୀ, ଓଡ଼ିଆ କଳା ପରିପାଟିର ଆଉ ଏକ ସ୍ୱାକ୍ଷର ବହନ କରେ । ଏହି ପରିବର୍ଦ୍ଧିତ କଳା ପରମ୍ପରା ପରିଶେଷରେ ଜୀବନ୍ତ ରୂପରେ ଗୀତଗୋବିନ୍ଦ କାବ୍ୟରେ ବହୁଳ ଭାବରେ ପ୍ରତିଫଳିତ ହୋଇଛି । ବୃକ୍ଷଲତା, ଜୀବଜନ୍ତୁ ଓ କାବ୍ୟ ନାୟିକା ମାନଙ୍କର କମନୀୟ ରୂପ ଲାବଣ୍ୟ ବେଶ ପରିପାଟି, ଓଡ଼ିଆ କଳାକାରଙ୍କ ଚିତ୍ରାବଳୀରେ ସତେ ଯେପରି ଜୀବନ୍ତ ।

କ୍ୟୁରେଟର୍ ଇନ୍‌ଚାର୍ଜ,
ପୋଥି ବିଭାଗ, ରାଜ୍ୟ ସଂଗ୍ରହାଳୟ
ଭୁବନେଶ୍ୱର-୧୪

# ଭୁବନେଶ୍ୱରକୁ ଆଧୁନିକ ସହରରେ ପରିଣତ କରାଯିବ : ମନ୍ତ୍ରୀ

ଭୁବନେଶ୍ୱରକୁ ଭାରତବର୍ଷର ଅନ୍ୟ ରାଜ୍ୟର ରାଜଧାନୀ ତୁଳନାରେ ଶ୍ରେଷ୍ଠ ରାଜଧାନୀ ରୂପେ ଗଢ଼ି ତୋଳିବା ପାଇଁ ରାଜ୍ୟ ସରକାର ବଦ୍ଧପରିକର ବୋଲି ରାଜ୍ୟ ଅର୍ଥ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ ପ୍ରକାଶ କରିଛନ୍ତି । ଭୁବନେଶ୍ୱର ପ୍ରତିଷ୍ଠା ଦିବସ ପାଳନ ଅବସରରେ 'ଆମ ଭୁବନେଶ୍ୱର' ତରଫରୁ ଆୟୋଜିତ ଭୁବନେଶ୍ୱର ସମ୍ମାନ-୨୦୦୮ ଉତ୍ସବରେ ମୁଖ୍ୟ ଅତିଥି ରୂପେ ଯୋଗଦେଇ କହିଥିଲେ ଜନାକୀର୍ଣ୍ଣ ରାଜଧାନୀରୁ ଜନସାଧାରଣଙ୍କ ମୁକ୍ତି ପାଇଁ ଫ୍ଲାଇ ଓଭର ବ୍ରିଜ୍ ନିର୍ମାଣ ପାଇଁ ୧୦୦ କୋଟି ଟଙ୍କା ବ୍ୟବସ୍ଥା କରାଯାଇଛି । ଅନୁଷ୍ଠାନର ସଭାପତି ଶ୍ରୀ ଭାଗିରଥୀ ବଡ଼ଜେନାଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ଉତ୍ସବରେ ଅନ୍ୟମାନଙ୍କ ମଧ୍ୟରେ ପୂର୍ବତନ ବିଧାୟକ ଶ୍ରୀ ବିପିନ ଦାସ, ଶ୍ରମିକ ନେତା ଶ୍ରୀ ନବ କିଶୋର ମହାନ୍ତି, ଖଦୀ ବୋର୍ଡ଼ ଅଧ୍ୟକ୍ଷ ଶ୍ରୀ ସମୀର ମହାନ୍ତି ଅତିଥି ରୂପେ ଯୋଗ ଦେଇ ଭୁବନେଶ୍ୱର ସହରର ବିଭିନ୍ନ ସମସ୍ୟା ଉପରେ ଆଲୋକପାତ କରିଥିଲେ ।

ବିଭିନ୍ନ କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ ସର୍ବଶ୍ରୀ ଅସୀମ ବସୁ, ଶ୍ରୀ ଲିଙ୍ଗରାଜ ସାମନ୍ତରାୟ, ଶ୍ରୀ ସଚ୍ଚି ଦାସ, ନିତୁ ସିଂ, ସୂଚନା ଅଧିକାରୀ ଶ୍ରୀ ହେମନ୍ତ କୁମାର ନାୟକ, କବି ରକ୍ଷକ ନାୟକ, ପରୀକ୍ଷିତ ଜେନା, ଉଦୟନାଥ ମହାପାତ୍ର, ଡଃ ପରୀକ୍ଷିତ ବିନ୍ଧାଣୀ, ଲେଫ୍ଟନାଣ୍ଟ କର୍ଣ୍ଣେଲ ଦୀନେଶ ସିଂହଦେଓ, ଉସାନ୍ତା ସାହୁ ପ୍ରମୁଖଙ୍କୁ ଅର୍ଥ ମନ୍ତ୍ରୀ ଶ୍ରୀ ଘଡାଇ ଭୁବନେଶ୍ୱର ସମ୍ମାନ-୨୦୦୮ ପ୍ରଦାନ କରିଥିଲେ । ଶେଷରେ ନୃତ୍ୟଗୁରୁ ଦିଲ୍ଲୀପ ସ୍ୱାଇଁଙ୍କ ନିର୍ଦ୍ଦେଶନାରେ ରଙ୍ଗିଲା ଡ୍ୟାନ୍ସ ଗ୍ରୁପ୍ ଦ୍ୱାରା ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଇଥିଲା ।

# ମାଧବ ଉପାସନା ପରମ୍ପରା ଓ ଭକ୍ତକବି ଜୟଦେବ



ଡାକ୍ତର ମିନତୀ ମହାରଣା

**ବି**ଶ୍ୱପ୍ରସିଦ୍ଧ ସଂସ୍କୃତ ମହାକାବ୍ୟ 'ଶ୍ରୀଗୀତଗୋବିନ୍ଦ'ର ରଚୟିତା ତଥା ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ, କବି ଶ୍ରୀ ଜୟଦେବ ସ୍ୱୀୟ ରଚିତ ଗ୍ରନ୍ଥର ମଙ୍ଗଳାଚରଣ ଶ୍ଳୋକରେ ସ୍ୱ ଆରାଧ ଦେବତା ଶ୍ରୀରାଧାମାଧବଙ୍କ 'ଗୀତଗୋବିନ୍ଦ' ସ୍ତୁତିଗାନ ପୂର୍ବକ ବର୍ଣ୍ଣନା କରିଛନ୍ତି -

> ମେଘୈମେଦୁର .....
> ରାଧାମାଧବୟୋର୍ଜୟନ୍ତୀ ଯମୁନାକୂଳେରହଃ କେଳୟଃ ।

ଏହି ଶ୍ଳୋକରେ କବି ଭଗବାନ ଶ୍ରୀକୃଷ୍ଣଙ୍କୁ 'ମାଧବ' ନାମରେ ସମ୍ବୋଧିତ କରି କୃଷ୍ଣ ନାମ ଅପେକ୍ଷା ମାଧବ ନାମ ପ୍ରତି ଥିବା ତାଙ୍କର ପ୍ରଗାଢ଼ ଅନୁରକ୍ତିକୁ ପ୍ରକାଶ କରିଛନ୍ତି । ତେବେ ରାଧାମାଧବ ନାମର ପ୍ରଚଳନ ତଥା ଲୋକପ୍ରିୟତା ଶ୍ରୀ ଜୟଦେବଙ୍କ ପରେ ବହୁ ମାତ୍ରାରେ ପ୍ରସାର ଲାଭ କରିଥିଲେ ମଧ୍ୟ ଶ୍ରୀ ଜୟଦେବଙ୍କ ପୂର୍ବରୁ ଉତ୍କଳରେ ମାଧବ ଉପାସନାର ପ୍ରଚଳନ ଥିଲା । ଶ୍ରୀ ଜୟଦେବଙ୍କର ଗଭୀର ମାଧବ ଭକ୍ତିର କାରଣ ନିର୍ଣ୍ଣୟ କରିବା ପାଇଁ ପ୍ରାଚୀନ କାଳରୁ ଉତ୍କଳରେ ପ୍ରଚଳିତ ମାଧବ ଉପାସନା କ୍ରମଶଃ ବିକାଶ ଲାଭ କରି ତାଙ୍କ ସମୟକୁ କିପରି ଲୋକପ୍ରିୟତା ଅର୍ଜନ କରିଥିଲା, ତାହା ବିଚାର ଓ ଅନୁସନ୍ଧାନ ଯୋଗ୍ୟ ଅଟେ ।

ଐତିହାସିକ ତଥ୍ୟାବଳୀରୁ ଜଣାଯାଏ ଯେ, ସପ୍ତମ ଶତାବ୍ଦୀର ପ୍ରଥମ ଭାଗରେ କୋଙ୍ଗଦ ମଣ୍ଡଳ (ଆଧୁନିକ ଗଞ୍ଜାମ ଜିଲ୍ଲାର ଉତ୍ତରାଂଶ ଓ ପୁରୀ ଜିଲ୍ଲାର ଅଧିକାଂଶ ଅଞ୍ଚଳକୁ ନେଇ ଗଠିତ ଭୂଖଣ୍ଡରେ ରାଜତ୍ୱ କରୁଥିବା ଶୈଳୋଦ୍ଭବ ବଂଶୀୟ ପ୍ରଥମ ପ୍ରସିଦ୍ଧ ନରପତି ମାଧବ ରାଜାଙ୍କର ଏକ ତାମ୍ରଶାସନରେ 'ଚକ୍ରଧର ଭଗବାନ ମାଧବଙ୍କ ସର୍ବପ୍ରଥମ ଉଲ୍ଲେଖ ଦେଖାଯାଏ । ଉକ୍ତ ଦାନପତ୍ରରେ ମଣ୍ଡଳାଧିପତି ଶକ୍ତିଶାଳୀ ମାଧବରାଜ 'ଚକ୍ରଧର'ଙ୍କୁ ଭଗବାନ ମାଧବଙ୍କ ସହିତ ତୁଳନା କରାଯାଇଛି । ଉକ୍ତ ରାଜବଂଶୀୟ କେତେକ ପ୍ରସିଦ୍ଧ ନରପତିଙ୍କର 'ମାଧବରାଜ', 'ମାଧବ ବର୍ମନ' ପ୍ରଭୃତି ନାମକରଣ ପ୍ରକାରାନ୍ତରରେ ମାଧବ ଉପାସନାର ଲୋକପ୍ରିୟତାକୁ ସୂଚିତ କରେ ।

ନବମ ଶତାବ୍ଦୀରେ ଉଭୟ ଖିଞ୍ଜିଳି ମଣ୍ଡଳ ଗନ୍ଧରାଢ଼ି (ବୌଦ୍ଧ, ସୋନପୁର, ଘୁମୁସର ଅଞ୍ଚଳ)ରେ ରାଜତ୍ୱ କରୁଥିବା ପରମ ବୈଷ୍ଣବ ଭଞ୍ଜାମଳ କୁଳତିଳକ ଗାନ୍ଧାଟ ନାମରେ ପରିଚିତ ଜନୈକ ଭକ୍ତ ରାଜା ଶତ୍ରୁଭଞ୍ଜ, ମହାନଦୀର ଦକ୍ଷିଣ ତୀରରେ ବର୍ତ୍ତମାନ ବୌଦ୍ଧ ସହରଠାରୁ ପ୍ରାୟ ୮ ମାଇଲ ଉତ୍ତରକୁ ଗନ୍ଧାଟପାଟି ନାମକ ଏକ ଗ୍ରାମ ସ୍ଥାପନ କରିଥିଲେ । ସେଠାରେ ସେ ପ୍ରସ୍ତର ନିର୍ମିତ ଏକ ଉଚ୍ଚପୀଠ ଉପରେ ସମାକୃତି ବିଶିଷ୍ଟ ସୁନ୍ଦର କାରୁକାର୍ଯ୍ୟ ଖଚିତ ଦୁଇଟି ମନ୍ଦିର ନିର୍ମାଣ କରି ସେଥିରେ ଯଥାକ୍ରମେ ନୀଳମାଧବ ଓ ସିଦ୍ଧେଶ୍ୱର ନାମରେ ପରିଚିତ ବିଗ୍ରହଦ୍ୱୟ ପ୍ରତିଷ୍ଠା କରିଥିଲେ । ମନ୍ଦିର ଗର୍ଭଗୃହସ୍ଥ ଚକ୍ର, ଶଙ୍ଖ, ପଦ୍ମ ଓ ଗଦାଧାରୀ ମୁଗୁନି ପଥରରେ ନିର୍ମିତ ଦଣ୍ଡାୟମାନ ନୀଳମାଧବ ବିଗ୍ରହଟି ଅତ୍ୟନ୍ତ ଜୀବନ୍ତ ଓ କମନୀୟ । ପୂର୍ବେ ଏହି ମନ୍ଦିର ଗାତ୍ରରେ ବିଭିନ୍ନ ସ୍ଥାନରେ ଦଶାବତାର ବିଗ୍ରହ ସମୂହ ଖଚିତ ହୋଇଥିଲା । ସେଥିମଧ୍ୟରୁ ଅଧିକାଂଶ ଏବେ ଅପସାରିତ ହୋଇଛି ।

ସେହିପରି ପ୍ରାଚୀନ ଉତ୍କଳରେ ଅନ୍ୟ କେତେକ ସ୍ଥାନରେ ମାଧବ ଉପାସନା ପ୍ରଚଳିତ ଥିବାର ଐତିହାସିକ ପ୍ରମାଣ ମିଳେ । ଗଞ୍ଜାମ ଅଞ୍ଚଳରେ ଅବସ୍ଥିତ ଶ୍ୱେତକ ରାଜ୍ୟ (ବର୍ତ୍ତମାନ ଚିକିଟି ଓ ଖିମିଣ୍ଡି ଅଞ୍ଚଳ)ରେ ରାଜତ୍ୱ କରୁଥିବା ଗଙ୍ଗବଂଶୀୟ ଇନ୍ଦ୍ରବର୍ମନ ଦେବଙ୍କ ସାନଖେମୁଣ୍ଡିରୁ ପ୍ରାପ୍ତ ଏକ ତାମ୍ରଲିପିରୁ ଜଣାଯାଏ ଯେ, ସେ 'ଲୋକମାଧବ' ନାମକ ବିଷ୍ଣୁମୂର୍ତ୍ତି ଓ 'ଶ୍ରୀସ୍ୱୟମ୍ଭୁକେଶ୍ୱର' ନାମକ ଶିବ ବିଗ୍ରହଙ୍କ ପୂଜା ଏବଂ ବ୍ରାହ୍ମଣମାନଙ୍କ ଉପଭୋଗ ନିମିତ୍ତ କେତେକ ଭୂମି ଦାନ କରିଥିଲେ । ଯଥା-

> ଏକଞ୍ଚ ଶ୍ରୀଲୋକମାଧବାୟ ଦତ୍ତଂ । ଅପରଂ ଅର୍ଦ୍ଧାଶଂ
> ଭଟ୍ଟାରକ ସ୍ୱୟମ୍ଭୂକେଶରାୟ ଦତ୍ତଂ । ଅପରଂ ଅର୍ଦ୍ଧାଶଂ ବ୍ରାହ୍ମଣେଭ୍ୟଃ

ସର୍ବୋପରି କଣ୍ଟିଲୋର ନୀଳମାଧବ ମନ୍ଦିର ଓଡ଼ିଶାରେ ମାଧବ ଉପାସନା ପରମ୍ପରାର ସମୁଜ୍ଜ୍ୱଳ ଦୃଷ୍ଟାନ୍ତ ହୋଇ ରହିଛି । ମହାନଦୀ କୂଳରେ ଅବସ୍ଥିତ ଖଣ୍ଡପଡ଼ା ରାଜ୍ୟର କଣ୍ଟିଲୋ ନାମକ ଗ୍ରାମରେ (ଅଧୁନା ନୟାଗଡ଼ ଜିଲ୍ଲା ପରିସରଭୁକ୍ତ) ଉତ୍କଳ ପ୍ରସିଦ୍ଧ ନୀଳମାଧବଙ୍କ ମନ୍ଦିର ରହିଛି । ଏହା ନିକଟରେ ଏକ ପ୍ରାଚୀନ ଶିବମନ୍ଦିର ମଧ୍ୟ ବିଦ୍ୟମାନ ।

ଏହି ମନ୍ଦିରଦ୍ୱୟ ସୋମବଂଶୀ ରାଜତ୍ୱ କାଳରେ ନିର୍ମିତ ହୋଇଥିଲା । ମୂଳ ମନ୍ଦିର ଭାଙ୍ଗିଯିବାରୁ ଏଗୁଡ଼ିକ ପୁନଃନିର୍ମିତ ହୋଇଛି ।

ଓଡ଼ିଶାରେ ମାଧବ ଉପାସନାର ବ୍ୟାପକତା ତଥା ଲୋକପ୍ରିୟତାର ଅନ୍ୟତମ ମୂକସାକ୍ଷୀ ହୋଇ ରହିଛି, ଭକ୍ତକବି ଶ୍ରୀ ଜୟଦେବଙ୍କ ଜନ୍ମଭୂମି କେନ୍ଦୁବିଲ୍ୱ ଶାସନ ନିକଟରେ ପ୍ରବାହିତା ଉତ୍କଳର ସରସ୍ୱତୀ ସ୍ୱରୂପା ପ୍ରାଚୀନଦୀ ତୀରବର୍ତ୍ତୀ (ଆଧୁନିକ କଟକ ଜିଲ୍ଲାର ନିଆଳୀ ଓ କଣ୍ଟାପଡ଼ା ବ୍ଲକ୍ ଅନ୍ତର୍ଗତ ଅଞ୍ଚଳ) ଦ୍ୱାଦଶ ମାଧବ ମନ୍ଦିର । ପ୍ରାଚୀକୂଳର ଅନ୍ୟ ତୀର୍ଥସ୍ଥାନ ପରି ଭକ୍ତକବି ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁବିଲ୍ୱ (କେନ୍ଦୁଲୀ) ଶାସନରେ ଏକ ବେଢ଼ା ମଧରେ ଅମ୍ବିକା, ମୁକ୍ତେଶ୍ୱର ଓ ମାଧବ ମନ୍ଦିର ବିଦ୍ୟମାନ ଥିବାର ପ୍ରତ୍ନତାତ୍ତ୍ୱିକ ଭୂଖୋଦନ ଫଳରେ ପ୍ରମାଣିତ ହୋଇଛି । ଏହି ଲୁପ୍ତ ମନ୍ଦିର ନବମ ଶତାବ୍ଦୀର ବୋଲି ଅନୁମାନ କରାଯାଏ । ଏହି ମନ୍ଦିରରେ ପ୍ରତିଷ୍ଠିତ ଅଣ୍ଡାକାର ପ୍ରଭାମଣ୍ଡଳ ମଣ୍ଡିତ ପ୍ରାଚୀନ ମାଧବ ବିଗ୍ରହଟି ଭୂଖୋଦନ ସମୟରେ ଆବିଷ୍କୃତ ହୋଇଛି । ଏହି ଅଞ୍ଚଳର ଅନ୍ୟ ଏକ ଐତିହାସିକ ମାଧବ ମନ୍ଦିର ଥିଲା ନିଆଳୀର ଲୁପ୍ତ ମାଧବ ମନ୍ଦିର । ନିଆଳୀ ଶାସନରେ ମାକଡ଼ା ପଥରରେ ନିର୍ମିତ ଏକ ବୃହତ୍ ଚଟାଣ ମଧରେ ପ୍ରାୟ ୧୧୭୦ ଖ୍ରୀଷ୍ଟାବ୍ଦରେ ନିର୍ମିତ ଶୋଭନେଶ୍ୱର ମନ୍ଦିର ଜରାଜୀର୍ଣ୍ଣ ଅବସ୍ଥାରେ ଦଣ୍ଡାୟମାନ ଥିଲେ ମଧ ବେଢ଼ା ମଧରେ ଥିବା ମାଧବ ମନ୍ଦିର ଅଧୁନା ଲୁପ୍ତ । କିନ୍ତୁ ବେଢ଼ାର ଏକ ଉନ୍ମୁକ୍ତ ସ୍ଥାନରେ କଳା ମୁଗୁନି ପଥରରେ ଖୋଦିତ ଅତି ଚମତ୍କାର ଛଅଟି ଦଣ୍ଡାୟମାନ ମାଧବ ବିଗ୍ରହ ଅବହେଳିତ ଅବସ୍ଥାରେ ପରିଦୃଷ୍ଟ ହୁଏ । ମୋଗଲ ରାଜତ୍ୱ କାଳରେ ମୁସଲମାନ ସେନା ଶୋଭନେଶ୍ୱର ମନ୍ଦିର ଆକ୍ରମଣ କରି ପରାସ୍ତ ହୋଇଥିବାରୁ ମନ୍ଦିର ତଥା ମାଧବ ବିଗ୍ରହଗୁଡ଼ିକ ଆସନ୍ନ ଧ୍ୱଂସମୁଖରୁ ରକ୍ଷା ପାଇଯାଇଥିବାର ଜଣାଯାଏ । ଏହିପରି ଭାବରେ ପ୍ରାଚୀ ନଦୀ ତୀରବର୍ତ୍ତୀ ଅଞ୍ଚଳରେ ଆହୁରି ଅନେକ ମାଧବ ବିଗ୍ରହ ସ୍ଥାପିତ ଓ ପୂଜିତ ହୋଇଥିବା ମନ୍ଦିର ରହିଥିବା ସମ୍ପର୍କରେ ଐତିହାସିକ ପ୍ରମାଣ ମିଳିଛି । ଏଥିମଧ୍ୟରୁ ସୁଆଗପୁର ଶାସନର ମାଧବ ବିଗ୍ରହ, ଅଡ଼ଶପୁର ନିକଟସ୍ଥ ପ୍ରସିଦ୍ଧ ମାଧବାନନ୍ଦ ମନ୍ଦିର, ପୀତାପଡ଼ାର ଧ୍ୱସ୍ତ ମାଧବ ମନ୍ଦିର, କୃଷ୍ଣ ପ୍ରସାଦର ବିଲୁପ୍ତ ମାଧବ ମନ୍ଦିର, ନିମାପଡ଼ା-ଅସ୍ତରଙ୍ଗ ସଡ଼କ ନିକଟସ୍ଥ ବିଲୁପ୍ତ ପ୍ରାଚୀ ମାଧବ ମନ୍ଦିର, ଚୌରାଶୀ ଗ୍ରାମର ଲକ୍ଷ୍ମୀ-ନାରାୟଣ ମନ୍ଦିର, ସୋମେଶ୍ୱରର ମାଧବ ମନ୍ଦିର ଏବଂ କାକଟପୁର ମଙ୍ଗଳାଙ୍କର ମନ୍ଦିରର ପଶ୍ଚିମ ଓ ଉତ୍ତର ଦିଗର ପାର୍ଶ୍ୱ ମୁଗୁନି ପଥରରେ ନିର୍ମିତ ଦୁଇଟି ମାଧବ ବିଗ୍ରହ ପ୍ରଭୃତିର ଅବସ୍ଥିତିରୁ ଓଡ଼ିଶାରେ ମାଧବ ଉପାସନାର ବ୍ୟାପକତା ଓ ଲୋକପ୍ରିୟତା ଜଣାପଡ଼େ । କାକଟପୁର ନିକଟସ୍ଥ ନୀଳକଣ୍ଠପୁରର ଭଗ୍ନ ମାଧବ ମନ୍ଦିର, ଲତାହରଣ ଗ୍ରାମର ଗ୍ରାମେଶ୍ୱର ଶିବଙ୍କର ମନ୍ଦିର ପରିସରରେ ପୂଜିତ ହେଉଥିବା ମାଧବ ବିଗ୍ରହ ଆଦି ବହୁସଂଖ୍ୟାରେ ମାଧବ ଉପାସନା ପ୍ରଚଳିତ ଥିବା ସତ୍ୟକୁ ଉଜ୍ଜୀବିତ କରିଥାଏ । କେବଳ ପ୍ରାଚୀ ତୀରବର୍ତ୍ତୀ ଅଞ୍ଚଳରେ ଯେ, ମାଧବ ଉପାସାର ଲୋକପ୍ରିୟତା ଅଧିକ ଥିଲା, ତାହା କହିବା ସତ୍ୟର ଅପଳାପ ହୋଇପାରେ । ମାଧବ ଉପାସନାର ଲୋକପ୍ରିୟତା ଓଡ଼ିଶାର ଅନ୍ୟ ଅଞ୍ଚଳରେ ମଧ ପ୍ରସାରିତ ହୋଇଥିବାର ଜଣାଯାଏ ।

ପ୍ରାଚୀ ତୀରବର୍ତ୍ତୀ ଅଞ୍ଚଳ ଭଳି ପୁଣ୍ୟତୋୟା ବୈତରଣୀ ନଦୀ ତୀରବର୍ତ୍ତୀ ବିରଜା କ୍ଷେତ୍ର ଓ ସନ୍ନିକଟ ଅନ୍ୟାନ୍ୟ ଅଞ୍ଚଳରେ ଦ୍ୱାଦଶ ମାଧବ ବିଗ୍ରହ ପୂଜିତ ହେଉଥିବାର ପ୍ରମାଣ ପ୍ରାଚୀନ 'ବିରଜାମହାତ୍ମ୍ୟ' ଗ୍ରନ୍ଥପାଠରୁ ଜଣାଯାଏ, ଯଥା-

'ପ୍ରୋକ୍ତଂ ଭଗବତା ପୂର୍ବଂ ମାଧବା ଦ୍ୱାଦଶେତି ମେ
କ୍ଷେତ୍ରେ ବୈରଜସେ ନିତ୍ୟ ମନ୍ତର୍ଗୃହ ନିବାସିନଃ ।'

'ବିରଜାମାହାତ୍ମ୍ୟ' ଗ୍ରନ୍ଥରେ ଆଦିମାଧବ, ଅନନ୍ତ ମାଧବ, ଭୋଗ ମାଧବ, ଚମ୍ପକ ମାଧବ, ରମା ମାଧବ, ପ୍ରସନ୍ନ ମାଧବ, ପୁରୁଷୋତ୍ତମ ମାଧବ, ସୁଦର୍ଶନ ମାଧବ, ଜନାର୍ଦ୍ଦନ ମାଧବ, ନରକାନ୍ତକ ମାଧବ, ବାସୁଦେବ ମାଧବ ଓ ଗୋବିନ୍ଦ ମାଧବ ଆଦି ଦ୍ୱାଦଶ ମାଧବ ବିଗ୍ରହ ନାମୋଲ୍ଲେଖ ଦେଖିବାକୁ ମିଳେ । ପ୍ରାଚୀ ଉପତ୍ୟକା ଭଳି ବୈତରଣୀ ଉପତ୍ୟକାରେ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ଏପର୍ଯ୍ୟନ୍ତ ହୋଇପାରିନଥିବାରୁ ସେଠାରେ ଏହି ଦ୍ୱାଦଶ ମାଧବଙ୍କ ଅବସ୍ଥା ଓ ଅବସ୍ଥିତି ବର୍ତ୍ତମାନ ଜଣାଯାଇ ପାରିନାହିଁ । କିନ୍ତୁ ଭୌମ ଓ ସୋମବଂଶୀ ରାଜତ୍ୱ କାଳରେ ନିର୍ମିତ ଉକ୍ତ ଦ୍ୱାଦଶ ମାଧବ ବିଗ୍ରହ ଶ୍ରୀ ଜୟଦେବଙ୍କର ଆବିର୍ଭାବ ପୂର୍ବରୁ ଉତ୍କଳରେ ମାଧବ ଉପାସନାର ଲୋକପ୍ରିୟତା ଓ ପ୍ରସାର ସପକ୍ଷରେ ଯୁକ୍ତିନିଷ୍ଠ ପ୍ରମାଣ ମିଳିଥାଏ ।

ସୁତରାଂ ଓଡ଼ିଶାରେ ମାଧବ ଉପାସନାର ପରମ୍ପରା ଓ ପରିପ୍ରସାର କବି ଜୟଦେବଙ୍କ ଆବିର୍ଭାବର ଯଥେଷ୍ଟ ପୂର୍ବରୁ ଯେ ଏକ ସୁଦୃଢ଼ ସ୍ଥିତିରେ ଥିଲା, ଏଥିରେ ସନ୍ଦେହ କରାଯାଇନପାରେ ।

ଭକ୍ତକବି ଜୟଦେବ ନିଜର ଆରାଧ ଦେବ ଭଗବାନ ଶ୍ରୀକୃଷ୍ଣଙ୍କୁ ଭକ୍ତିଦ୍ୱାରା ପ୍ରଭାବିତ ହୋଇ ମାଧବ ନାମରେ ସମ୍ବୋଧିତ କରିଥିଲେ । ତେଣୁ 'ଶ୍ରୀଗୀତଗୋବିନ୍ଦ'ର ଅଧିକାଂଶ ସର୍ଗରେ ରାଧାକୃଷ୍ଣ ନାମ ପରିବର୍ତ୍ତେ 'ରାଧାମାଧବ' ନାମ ସେ ଉଲ୍ଲେଖ କରିଛନ୍ତି । କବିଙ୍କର ଅମରକୃତି 'ଶ୍ରୀଗୀତଗୋବିନ୍ଦ' ରାଧାକୃଷ୍ଣଙ୍କର ଅପ୍ରାକୃତ ପ୍ରେମଲୀଳା ଓ ଭକ୍ତିତତ୍ତ୍ୱ ଉପରେ ପର୍ଯ୍ୟବସିତ ହୋଇଛି । ମାଧବ ଭକ୍ତି ରସପ୍ଲୁତ ତାଙ୍କ ହୃଦୟରୁ ଶ୍ରୀରାଧାକୃଷ୍ଣଙ୍କ ମିଳନ ପ୍ରସଙ୍ଗରେ ସ୍ୱତଃସ୍ଫୂର୍ତ୍ତ ଭାବରେ ଝଙ୍କୃତ ହୋଇଛି-

ମଞ୍ଜୁତର କୁଞ୍ଜତଳ କେଳି ସଦନେ
ବିଳସ ରତିର ଉସହସିତ ବଦନେ
ପ୍ରବିଶ ରାଧେ ମାଧବ ସମୀପ ମିହ (ଧ୍ରୁବପଦ) (୧୭)

**ସହାୟକ ଗ୍ରନ୍ଥସୂଚୀ**


୧. ପ୍ରାଚୀ ମହାତ୍ମ୍ୟ - ୫ମ, ୧୦ମ ଅଧ୍ୟାୟ

୨. ପ୍ରାଚୀ ନଦୀର ଐତିହାସିକ ବିଭବ - ଡାକ୍ତର ଶ୍ରୀ ରାଧାଚରଣ ପଣ୍ଡା, ପୃ-୯୯, ୧୦୧

୩. 'ବିରଜା ମହାତ୍ମ୍ୟ' ମୌଳିକ ଗ୍ରନ୍ଥ

୪. 'ଶ୍ରୀ ଜୟଦେବ ଓ ଶ୍ରୀଗୀତଗୋବିନ୍ଦ' - କେଦାରନାଥ ମହାପାତ୍ର



ଓଡ଼ିଶା ଆୟୁର୍ବେଦ ସେବାସଦନ
୧୧୧, ମ୍ୟୁନିସିପାଲିଟି ମାର୍କେଟ
ଓ.ଏମ୍.ପି. ଛକ, କଟକ

# ମହାକବି ଜୟଦେବ ଓ ଗୀତଗୋବିନ୍ଦ

ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର

ମହାକବି ଜୟଦେବଙ୍କ ଅମର ଲେଖନୀରୁ ନିଃସୃତ ହୋଇଥିଲା ରାଧାକୃଷ୍ଣ ଲୀଳା ସମ୍ବଳିତ ଦ୍ୱାଦଶ ସର୍ଗ ବିଶିଷ୍ଟ ଲଳିତକୋମଳ କାନ୍ତ ପଦାବଳୀ ହେଉଛି 'ଗୀତଗୋବିନ୍ଦ' । ମହନୀୟତା ହେଉଛି, ପବିତ୍ର ନୀଳାଚଳଧାମରୁ ଗୀତଗୋବିନ୍ଦର ସ୍ୱର ଝଙ୍କୃତ ହୋଇ ସମଗ୍ର ଭାରତବର୍ଷରେ ରାଧାକୃଷ୍ଣ ଲୀଳାର ପ୍ରସାର କରିଥିଲା । ଏହି ପ୍ରଥିତଯଶା ମହାକବି ଓଡ଼ିଶାର ପ୍ରାଚୀନଦୀ ତୀରସ୍ଥ କେନ୍ଦୁବିଲ୍ୱ ଗ୍ରାମରେ ଏକାଦଶ ଶତାବ୍ଦୀର ଶେଷ ପ୍ରାନ୍ତରେ ଜନ୍ମଗ୍ରହଣ କରିଥିଲେ । ତଦୀୟ ପିତୃଦେବ ଥିଲେ ଶ୍ରୀ ଭୋଜଦେବ ଏବଂ ମାତୃଦେବୀ ଥିଲେ ରାଧାଦେବୀ ତଥା ସଖା ଥିଲେ ପରାଶର ପ୍ରଭୃତି ପ୍ରିୟବର୍ଗ । ସ୍ୱରଚିତ ଗୀତଗୋବିନ୍ଦର ଦ୍ୱାଦଶ ସର୍ଗ ଦଶମ ଶ୍ଳୋକରେ କବି ଆପଣାର ପରିଚୟ ପ୍ରଦାନ ପୂର୍ବକ ଉଲ୍ଲେଖ କରିଛନ୍ତି -

'ଗୀତଗୋବିନ୍ଦ'ର ଏହି ପ୍ରଥମ ଭାଷ୍ୟର ନାମ 'ଭାଗବିଭାଗିନୀ' ଟୀକା । ପରବର୍ତ୍ତୀ କାଳରେ ଓଡ଼ିଶାର କବି ଧୃତିଦାସ 'ସନ୍ଦର୍ଭ ଦୀପିକା' ଏବଂ କବିରାଜ ନାରାୟଣ ଦାସ 'ସର୍ବାଙ୍ଗ ସୁନ୍ଦରୀ' ଟୀକା ରଚନା କରି ଗୀତଗୋବିନ୍ଦକୁ ବିଶ୍ୱବିଖ୍ୟାତ କରିପାରିଥିଲେ ।

ଶ୍ରୀଭୋଜଦେବ ପ୍ରଭବସ୍ୟ ରାଧାଦେବୀସୁତ ଜୟଦେବସ୍ୟ
ପରାଶରାବ ପ୍ରିୟବର୍ଗ କଣ୍ଠେ ଶ୍ରୀଗୀତଗୋବିନ୍ଦ କବିତ୍ୱମସ୍ତ ।

ଦ୍ୱାଦଶ ଶତାବ୍ଦୀରେ ମହାକବି ଜୟଦେବ ଶ୍ରୀକ୍ଷେତ୍ରରେ ନିବାସ କରି ଶ୍ରୀଜଗନ୍ନାଥଙ୍କ ବୈଷ୍ଣବୀୟ ଦାର୍ଶନିକ ଧାରା ପ୍ରତିପାଦନ କାମନାରେ ନିମ୍ବାର୍କମତର ମଧୁର ମୂର୍ଚ୍ଛନାରେ ଗୀତଗୋବିନ୍ଦ ରଚନା କରିଥିଲେ । ମହାବାହୁଙ୍କ ଅପାର କରୁଣାରୁ ସ୍ୱଳ୍ପକାଳ ମଧ୍ୟରେ ଏହା ସର୍ବଭାରତୀୟ ସ୍ତରରେ ପ୍ରସିଦ୍ଧି ଲାଭ କରିଥିଲା । ଦ୍ୱାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଉତ୍କଳୀୟ କବି ଉଦୟନ ଗୀତଗୋବିନ୍ଦର ପ୍ରଥମ ଟୀକା ରଚନା ପୂର୍ବକ ଶ୍ରୀପୁରୁଷୋତ୍ତମ ଚରିତକୁ ବୈଷ୍ଣବୀୟ ଦର୍ଶନର ଭବ୍ୟ ରୂପ ପ୍ରଦାନ କରିଥିଲେ । 'ଗୀତଗୋବିନ୍ଦ'ର ଏହି ପ୍ରଥମ ଭାଷ୍ୟର ନାମ 'ଭାଗବିଭାଗିନୀ' ଟୀକା । ପରବର୍ତ୍ତୀ କାଳରେ ଓଡ଼ିଶାର କବି ଧୃତିଦାସ 'ସନ୍ଦର୍ଭ ଦୀପିକା' ଏବଂ କବିରାଜ ନାରାୟଣ ଦାସ 'ସର୍ବାଙ୍ଗ ସୁନ୍ଦରୀ' ଟୀକା ରଚନା କରି ଗୀତଗୋବିନ୍ଦକୁ ବିଶ୍ୱବିଖ୍ୟାତ କରିପାରିଥିଲେ । ଅନ୍ୟମାନଙ୍କ ମଧ୍ୟରେ ଅବଶ୍ୟ ଓଡ଼ିଆକବି ଧରଣୀଧର ମିଶ୍ର, ବୃନ୍ଦାବନ ଦାସ, ଦୀନକୃଷ୍ଣ ଦାସ, ଉଦ୍ଧବ ଦାସ, ତ୍ରିଲୋଚନ ଦାସ, ବଜରୀ ଦାସ, ବ୍ରଜନାଥ ମିଶ୍ର ପ୍ରଭୃତି ଏହି ଅମରକୃତୀର ଓଡ଼ିଆ ପଦ୍ୟ ଓ ଗଦ୍ୟାନୁବାଦ କରିଛନ୍ତି । ଅଧିକନ୍ତୁ, ପିଣ୍ଡିକି ଶ୍ରୀଚନ୍ଦନ ପ୍ରଭୃତି କବି କୋବିଦବୃନ୍ଦ ଏହାକୁ ରାସରୂପ ପ୍ରଦାନ ପୂର୍ବକ ଓଡ଼ିଶାରେ ଗୀତଗୋବିନ୍ଦକୁ ଅଧିକରୁ ଅଧିକ ଲୋକପ୍ରିୟ କରିପାରିଛନ୍ତି । ଓଡ଼ିଆ ସାହିତ୍ୟରେ ଏହି ମହାକାବ୍ୟର ପ୍ରଭାବ ବିଶେଷ ଭାବରେ ପରିଲକ୍ଷିତ । ଓଡ଼ିଶାର କୋଣେ ଅନୁକୋଣେ ଗୀତଗୋବିନ୍ଦ ମୂଳକାବ୍ୟ ତଥା ଏହାର ଟୀକା ସମୂହର ପୋଥି ବହୁଳ ଭାବରେ ଉପଲବ୍ଧ, ଯାହା ଭାରତର ଅନ୍ୟ ଅଞ୍ଚଳରେ ଅନୁପଲବ୍ଧ ।

ଗୌରବର ବିଷୟ, ମହାକବି ଜୟଦେବଙ୍କର ପ୍ରତିଷ୍ଠାକୁ ଗୋବର୍ଦ୍ଧନାଚାର୍ଯ୍ୟ ସ୍ୱୀକାର କରିଥିବା କଥା ଷୋଡ଼ଶ ଶତାବ୍ଦୀର ମୈଥିଳୀ ପଣ୍ଡିତ କେଶବ ମିଶ୍ର ସ୍ୱରଚିତ 'ଅଳଙ୍କାର ଶେଖର' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ମିଥିଳାର ଭକ୍ତକବି ଚନ୍ଦ୍ରଦତ୍ତ ସ୍ୱରଚିତ 'ଭକ୍ତମାଳା'ରେ ମହାକବି ଜୟଦେବଙ୍କ ପରିଚୟ ପ୍ରଦାନ ପୂର୍ବକ ଲେଖିଛନ୍ତି -

ଜଗନ୍ନାଥ ପୁରୀ ପ୍ରାନ୍ତେ ଦେଶେ ଚୈବୋତ୍କଳାଭିଧେ,
କେନ୍ଦୁବିଲ୍ୱ ଇତିଖ୍ୟାତଃ ଗ୍ରାମଃ ବ୍ରାହ୍ମଣସଙ୍କୁଳଃ ।
ତତ୍ରୋତ୍କଳେ ଦ୍ୱିଜା ଜାତୋ ଜୟଦେବ ଇତି ଶ୍ରୁତଃ,
ବିଦ୍ୟାଭ୍ୟାସରତଃ ଶାନ୍ତଃ ପୁରୁଷୋତ୍ତମ ପୂଜକଃ ।

ନାଭାଦାସଙ୍କ ରଚିତ 'ଭକ୍ତମାଳା'ରୁ ଜଣାଯାଏ ଜୟଦେବ ଉତ୍କଳୀୟ କବି ଥିଲେ । ସର୍ବୋପରି ମହାକବି ଜୟଦେବ ସ୍ୱୟଂ ଉଲ୍ଲେଖ କରିଛନ୍ତି ।

ବର୍ଣ୍ଣିତଃ ଜୟଦେବକନ୍ ହରେଭିଦଂ ପ୍ରଣତେନ,
କେନ୍ଦୁବିଲ୍ୱ ସମୁଦ୍ର ସମ୍ଭବ ରୋହିଣୀ ରମଣେନ ।

ଶ୍ରୀମନ୍ ଗୌରାଙ୍ଗ ମହାପ୍ରଭୁଙ୍କ ସମସାମୟିକ ତଥା ରାୟ ରାମାନନ୍ଦଙ୍କ ସଚିବ ଭକ୍ତ ମାଧବ ପଟ୍ଟନାୟକ ସ୍ୱରଚିତ 'ବୈଷ୍ଣବ ଲୀଳାମୃତ'ରେ ଉଲ୍ଲେଖ କରିଛନ୍ତି -

ବିପ୍ର ସେ ଜୟଦେବ ନାମ, କ୍ଷେତ୍ରବରକୁ ଆଗମନ,
କେନ୍ଦୁଲି ଶାସନ ତା ଗ୍ରାମ, ପ୍ରାଚୀନଦୀର ତଟ ପୁଣ ।
ରଚିଲା ଶ୍ରୀଗୀତଗୋବିନ୍ଦ, ଲଭିଲା ପରମ ଆନନ୍ଦ ।

ଜୟଦେବଙ୍କ ସ୍ମୃତିରେ ଶ୍ରୀଚୈତନ୍ୟ ସଂକୀର୍ତ୍ତନ ସହ କେନ୍ଦୁବିଲ୍ୱ ମଧ୍ୟ ଯାତ୍ରା କରିଥିଲେ ।

ସ୍ମରଣଯୋଗ୍ୟ ଯେ, ଦ୍ୱାଦଶ ଶତାବ୍ଦୀରୁ ଷୋଡ଼ଶ ଶତାବ୍ଦୀ ମଧ୍ୟରେ 'ଗୀତଗୋବିନ୍ଦ' ଶ୍ରୀଜଗନ୍ନାଥଙ୍କ ନିତ୍ୟସେବାର ଅଙ୍ଗୀଭୂତ ହୋଇ ଆଧ୍ୟାତ୍ମିକ ସୌରଭ ମଣ୍ଡିତ ହୋଇସାରିଥିଲା । ଅଧିକନ୍ତୁ, ଦ୍ୱାଦଶ ଶତାବ୍ଦୀରୁ କବିପତ୍ନୀ ପଦ୍ମାବତୀଙ୍କ ନୃତ୍ୟର ତାଳେ ତାଳେ ରସମୟ ଗୀତଗୋବିନ୍ଦର ଗାନ ଶ୍ରୀମନ୍ଦିରରେ ଏକ ଭବ୍ୟ ପରମ୍ପରା ସୃଷ୍ଟି କରିଥିଲା, ଯାହା ଏବେବି ଉଜ୍ଜୀବିତ । ଆଜି ମଧ୍ୟ, ଅଗଣିତ ଓଡ଼ିଆଙ୍କର ଗୀତଗୋବିନ୍ଦ ଏକ ନିତ୍ୟ ପଠନୀୟ ଗ୍ରନ୍ଥ, ଯାହା ଭାରତର ଅନ୍ୟାନ୍ୟ ଅଞ୍ଚଳରେ ଦୃଷ୍ଟିଗୋଚର ହୁଏ ନାହିଁ । ଗୀତଗୋବିନ୍ଦକୁ କେନ୍ଦ୍ରକରି ଓଡ଼ିଶାରେ ଯେତେ ନାଟକ, ରାସଲୀଳା, ଗୀତିନାଟ୍ୟ ପ୍ରଭୃତି ରଚିତ ତାହା ଭାରତରେ ଅନ୍ୟତ୍ର ବିରଳ ।

ମହାକବି ଜୟଦେବ ପୁରୀରେ ଗୀତଗୋବିନ୍ଦ ରଚନା କରି ଜଗନ୍ନାଥ ଧର୍ମ ଓ ଦର୍ଶନକୁ ବୈଷ୍ଣବୀୟ ଭାବଧାରାରେ ସର୍ବଜନବୋଧ୍ୟ କରିବାର ପ୍ରୟାସ କରିଥିଲେ ହେଁ କେତେକ ତାଙ୍କୁ ବଙ୍ଗୀୟ କବି ଭାବରେ ପ୍ରତିପାଦନ କରିବାର ଅପଚେଷ୍ଟା କରିଛନ୍ତି । ସେମାନଙ୍କ ମତରେ ପଶ୍ଚିମବଙ୍ଗର ଅଜୟ ନଦୀ ତଟସ୍ଥ କେନ୍ଦୁଲୀ ଗ୍ରାମରେ ଜୟଦେବ ଜନ୍ମଗ୍ରହଣ କରିଥିଲେ ତଥା ବଙ୍ଗରାଜା ଲକ୍ଷ୍ମଣ ସେନ୍‌ଙ୍କ ସଭାମଣ୍ଡନ କରିଥିଲେ । ସେମାନେ ପ୍ରତିପାଦନ କରିଥାନ୍ତି ଯେ, ଅଜୟ ନଦୀର ବାଲୁକା ତଟରେ ଅନୁଷ୍ଠିତ ବାଉଲ୍‌ମେଳା ଜୟଦେବଙ୍କ ସ୍ମୃତି ବହନ କରୁଛି । ଏ ସଂପର୍କରେ ସ୍ପଷ୍ଟ କରାଯାଇପାରେ ଯେ, ଜୟଦେବଙ୍କର ଜନ୍ମ ଏକାଦଶ ଶତାବ୍ଦୀର ଶେଷ ଭାଗ ଏବଂ ଗୀତଗୋବିନ୍ଦର ରଚନା ଦ୍ୱାଦଶ ଶତାବ୍ଦୀର ଆଦ୍ୟଭାଗ, ଅଥଚ ଲକ୍ଷ୍ମଣ ସେନ୍‌ଙ୍କ ରାଜତ୍ୱର ସମୟ ୧୧୭୯ଠାରୁ ୧୨୦୫ । ସେହି ସମୟକୁ ଉଦୟନଙ୍କ ଟୀକା ରଚନା ହୋଇଗଲାଣି । ଅତଏବ ପ୍ରମାଣିତ ହୁଏ ଯେ ଜୟଦେବ କସ୍ମିନ୍‌କାଳେ ଲକ୍ଷ୍ମଣ ସେନ୍‌ଙ୍କ ରାଜପଣ୍ଡିତ ନଥିଲେ । ତଥାପି ଏକ କପୋଳକଳ୍ପିତ ଶ୍ଳୋକ ମାଧ୍ୟମରେ ଜୟଦେବଙ୍କୁ ଲକ୍ଷ୍ମଣ ସେନ୍‌ଙ୍କ ସଭାରତ୍ନ ଭାବରେ ଚିତ୍ରଣ କରାଯାଉଛି । ସେହି ଶ୍ଳୋକଟି ହେଉଛି -

ଗୋବର୍ଦ୍ଧନଶ୍ଚ ଶରଣଃ ଜୟଦେବ ଉମାପତିଃ
କବି ରାଜଶ୍ଚ ପଞ୍ଚେତେ ରତ୍ନାନି ଲକ୍ଷ୍ମଣସ୍ୟଃ ।

ଏହି ଶ୍ଳୋକଟି ସେନ୍ ରାଜାଙ୍କ ଦରବାରରେ ଖୋଦିତ ହୋଇଥିବା କେହି କେହି ମତ ଦିଅନ୍ତି । କିନ୍ତୁ ମହମ୍ମଦ ବକ୍ତିଆର ଖିଲିଜ୍‌ଙ୍କଦ୍ୱାରା ଲକ୍ଷ୍ମଣ ସେନ୍‌ଙ୍କ ରାଜଧାନୀ ଧ୍ୱଂସ ହେବା ପରେ କେଉଁଠାରୁ ଏହି ଶ୍ଳୋକଟି ଉଦ୍ଧାର କରାଗଲା ଏବଂ ଶିଳାଲେଖଟି କାହିଁକି ଅଦ୍ୟାବଧି ବିଧିବଦ୍ଧ ଭାବରେ ସଂପାଦନ ହୋଇନାହିଁ ସେ ସଂପର୍କରେ ଠିକ୍ ତଥ୍ୟ ଅନୁପଲବ୍ଧ ।

ବିଖ୍ୟାତ ପାଶ୍ଚାତ୍ୟ ଗବେଷକ ସାର୍ ଉଇଲିୟମ୍ ଜୋନ୍‌ସ ଅଧ୍ୟୟନ ଓ ଅନୁଧ୍ୟାନ ପରେ ୧୭୯୯ ଖ୍ରୀଷ୍ଟାବ୍ଦରେ 'ଏସିଆଟିକ୍ ରିସର୍ଚ୍ଚ' ପତ୍ରିକାରେ ଜୟଦେବ ଓଡ଼ିଶାର ବୋଲି ଏକ ପ୍ରବନ୍ଧ ପ୍ରକାଶ କରିଥିଲେ । ୧୮୭୫ ମସିହାରେ ଅନ୍ୟତମ ଗବେଷକ ସାର୍.ଏଚ୍.ଉଇନ୍ ଅନୁରୂପ ମତ ପ୍ରଦାନ କରିଛନ୍ତି । କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଆଶୁତୋଷ ଭଟ୍ଟାଚାର୍ଯ୍ୟ ଉଲ୍ଲେଖ କରିଛନ୍ତି ଯେ- 'ଜୟଦେବ ଛିଲେନ୍ ଉଡ଼ିଆ... । ଜୟଦେବ ଲକ୍ଷ୍ମଣ ସେନ୍‌ର ସଭାକବି ଛିଲେନ୍ ବାଲେ ଏ ଯାବତ୍ ଗ୍ରହନି ଯୋଗ୍ୟ ନୟ ।' ପ୍ରଖ୍ୟାତ ବଙ୍ଗୀୟ ଐତିହାସିକ ଡକ୍ଟର ସୁକୁମାର ସେନ୍ 'ବଙ୍ଗଲା ସାହିତ୍ୟେର ଇତିହାସ'ରେ ଉଲ୍ଲେଖ କରିଛନ୍ତି -

'ଅଜୟାର ଧାରେ ବାଲୁତଟେ ପୌଷ ସଂକ୍ରାନ୍ତି ସ୍ଥାନେର ମେଳା ନିକଟେ ଯେ ଗ୍ରାମେ ଆଛେ ତାହା କେନ୍ଦୁଲୀ ନୟ । ଏଖାନେ କେନ୍ଦୁଲୀ ଗ୍ରାମ ଛିଲ ବଲିୟା କୋନ୍ ପ୍ରମାନ ନୟ । ଚୈତନ୍ୟର ସମୟେ ଜୟଦେବ ସ୍ମୃତି ସମ୍ୱଲିତ ଏ ମେଲାର କୋନ୍ ଉଲ୍ଲେଖ ନୟ ଏବଂ ଜୟଦେବର ଜନ୍ମସ୍ଥାନ ବା ବାସସ୍ଥାନ ରୂପେ କେନ୍ଦୁଲୀର ଅନ୍ୟ କୋନ୍ ଗ୍ରାମେର କଥାଏ ନାଇ ।'

ଏଥିରୁ ପ୍ରମାଣିତ ହେଉଛି ଏକ ମିଥ୍ୟା ଶିଳାଲେଖର ଶ୍ଳୋକକୁ ଆଧାର କରି ତଥା ମାତ୍ର ଶହେ ବର୍ଷ ମଧ୍ୟରେ ଅନୁଷ୍ଠିତ ବାଉଲମେଳାକୁ ଉପଜୀବ୍ୟ କରି ଅଜୟ ନଦୀ ତୀର କେନ୍ଦୁଲି ଗ୍ରାମକୁ ଜୟଦେବଙ୍କ ବାସସ୍ଥାନ ଏବଂ ତାଙ୍କୁ ବଙ୍ଗୀୟ କବି ଭାବରେ ପ୍ରତିପାଦନ କରିବାକୁ ହୀନ ଉଦ୍ୟମ କରାଯାଇଛି । ସୂଚନାଯୋଗ୍ୟ ଯେ, ଏ ଅବଧି ପଶ୍ଚିମ ବଙ୍ଗରେ ଗୀତଗୋବିନ୍ଦର ପରମ୍ପରା ବା ଭାବଧାରା ସଂଚାରିତ ହୋଇପାରିନାହିଁ ।

ନିର୍ବିବାଦରେ ବ୍ୟକ୍ତ କରାଯାଇପାରେ ଯେ, ମହାକବି ଜୟଦେବ ଓଡ଼ିଶାର ପ୍ରାଚୀତଟ କେନ୍ଦୁଳି ଗ୍ରାମରେ ଜନ୍ମଗ୍ରହଣ କରି ଶ୍ରୀକ୍ଷେତ୍ରରେ ଗୀତଗୋବିନ୍ଦ ରଚନା କରିଥିଲେ ତଥା ଜଗନ୍ନାଥ ଧର୍ମ ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ହୋଇ ଏହି ରସମୟ ଗୀତିକାବ୍ୟ ଓଡ଼ିଶାର ବିଜ୍ଞ, ପ୍ରାଜ୍ଞ, କବି କୋବିଦବୃନ୍ଦଙ୍କଦ୍ୱାରା ଭାରତୀୟ ଆଧ୍ୟାତ୍ମିକ ପ୍ରଜ୍ଞାର ବାଙ୍ମୟ ପ୍ରକାଶ ରୂପେ ପ୍ରତିଭାତ ହୋଇଥିଲା । ମହନୀୟତା ହେଉଛି, ପୁରୁଷୋତ୍ତମ ଜଗନ୍ନାଥଙ୍କ ଦିବ୍ୟଲୀଳାଭୂମିରୁ ଭାରତୀୟ ଦର୍ଶନ ଓ ସାରସ୍ୱତ ସୌଷ୍ଠବ ସମ୍ୱଳିତ ଏହି ଅଲୌକିକ କୃତିର ସ୍ୱର ଝଙ୍କୃତ ହୋଇ ସମଗ୍ର ବିଶ୍ୱକୁ ରାଧାକୃଷ୍ଣ ଲୀଳାରେ ପ୍ଲାବନ କରିଥିଲା ।

ବଡ଼ପଣ୍ଡା ସାହି
ଢେଙ୍କାନାଳ

# ମହାକବି ଶ୍ରୀଜୟଦେବ

ଇଂ ଗଦାଧର ମିଶ୍ର

**ବି**ଶାଳ ଆର୍ଯ୍ୟାବର୍ତ୍ତରେ ପ୍ରାଗ୍‌ବୈଦିକ ଯୁଗରୁ ବହୁ ମୁନି, ଋଷି ତପସ୍ୱୀ ଓ କବିମାନେ ଜନ୍ମ ଗ୍ରହଣ କରି ସ୍ୱ ସ୍ୱ କୃତି ସଂପାଦନ ପୂର୍ବକ ଜନମାନସରେ ନିଜକୁ ପ୍ରତିଷ୍ଠିତ କରିଯାଇଅଛନ୍ତି । ମହାକାଳ ବା ସମୟ ତା'ର ହିସାବ ରଖିଅଛି । ସମୟକୁ ଗାଣିତିକ ସୂତ୍ରରେ କିପରି ଭାବରେ କିଏ ଭାଗ ଭାଗ କରି ତା'ର ନିର୍ଦ୍ଦିଷ୍ଟ ସୀମା ନିର୍ଦ୍ଧାରଣ କରି ଓ ତା'ର ନାମକୁ 'ଯୁଗ' ବୋଲି ଅଭିହିତ କରିଥିଲେ ସେ ସଂପର୍କରେ ଆମେ ଅଜ୍ଞ । ସେ ଯାହାହେଉ, ଉପରୋକ୍ତ ଯୁଗ ଚାରିଭାଗରେ ବିଭକ୍ତ ଯଥା- ସତ୍ୟ, ତ୍ରେତା, ଦ୍ୱାପର ଓ କଳି । ସତ୍ୟ ଯୁଗଠାରୁ ତ୍ରେତୟା, ଦ୍ୱାପର ପର୍ଯ୍ୟନ୍ତ ଆର୍ଯ୍ୟଭୂମି ଭାରତବର୍ଷରେ ଯାହା ଯାହା ଘଟି ଯାଇଅଛି ତା'ର ବିବରଣୀ ଆମେ ବେଦ, ଉପନିଷଦ ପୁରାଣ, ଧର୍ମଶାସ୍ତ୍ର ମାଧ୍ୟମରେ ପାଇଥାଉଁ । ଅଧୁନା କଳିଯୁଗରେ ଆମେ ଇତିହାସ ପୃଷ୍ଠା ଓଲଟାଇଲେ ଘଟିଥିବା ଓ ଏବେ ଘଟୁଥିବା ବିଷୟ ଜାଣିପାରୁଅଛେଁ । ତ୍ରେତୟା ଯୁଗରେ ଆର୍ଯ୍ୟଶ୍ରେଷ୍ଠ ରାମ ଲଙ୍କାର ଦ୍ରାବିଡ଼ ରାଜା ରାବଣକୁ ତା'ର କୁକର୍ମ, ନାରୀ ଅପହରଣ ପାଇଁ ଯୁଦ୍ଧରେ ପରାସ୍ତ କରି ବଧ କରିଥିଲେ । ଖାଲି ସେତିକି ନୁହେଁ ସେ ଯେଉଁ ବାନର ସେନାଙ୍କ (ବାନର ନାମକ ପଦ୍ଧତିଧାରୀ) ଦ୍ୱାରା ଶ୍ରେଷ୍ଠ ସ୍ଥପତି ରୂପେ ଭାରତ ଓ ଲଙ୍କା ମଧ୍ୟରେ ଥିବା ସମୁଦ୍ର ବକ୍ଷରେ ସେତୁବନ୍ଧ ନିର୍ମାଣ କରି ଯୁଦ୍ଧ ଯାତ୍ରା କରିଥିଲେ ତାହା ଅତୀବ ଆଶ୍ଚର୍ଯ୍ୟ ।

ରାମ ଏକାଧାରାରେ ଥିଲେ ପ୍ରଜାବତ୍ସଳ ଓ ନ୍ୟାୟବନ୍ତ । ସେ ଜଣେ ସାଧାରଣ ପ୍ରଜାର କଥାରେ ସ୍ୱୀୟ ପତ୍ନୀ ସୀତା ଦେବୀଙ୍କୁ ତ୍ୟାଗ କରିଥିଲେ । ଏ ସମସ୍ତ ଘଟଣା ପ୍ରଥମ କରି ଋଷି ବାଲ୍ମିକୀଙ୍କଦ୍ୱାରା ମହାନାଟକ (ରାମାୟଣ) ମହାକାବ୍ୟରେ ପ୍ରକାଶ ପାଇଥିଲା - ସଂସ୍କୃତ ଭାଷାରେ । ଏହି କାବ୍ୟକୁ ମହାକାବ୍ୟ ରୂପେ ଆଖ୍ୟାୟିତ କରାଯାଇଥିଲା । ତା'ପରବର୍ତ୍ତୀ ଦ୍ୱାପରରେ ଘଟିଥିଲା ମହାଭାରତ ଯୁଦ୍ଧ । ଏହି ଯୁଦ୍ଧର ସମସ୍ତ ଘଟଣାବଳୀକୁ ଦ୍ୱିତୀୟ ମହାକାବ୍ୟ ମହାଭାରତରେ ଲିପିବଦ୍ଧ କରିଥିଲେ ବ୍ୟାସଦେବ ସଂସ୍କୃତ ଭାଷାରେ । ବ୍ୟାସଦେବ ପରମ ଶାସ୍ତ୍ର ଭାଗବତ ଓ ଅଷ୍ଟାଦଶ ପୁରାଣର ମଧ୍ୟ ରଚୟିତା । ଏଣୁ ଏହି ଦୁଇ ତୁଙ୍ଗ ବିଦ୍ୱାନ ସ୍ୱୀୟ ପ୍ରତିଭା ବଳରେ ସାତକାଣ୍ଡରେ ରାମାୟଣ ଓ ଅଠର ପର୍ବ ମଧ୍ୟରେ ମହାଭାରତ ରଚନା କରି ଆଜି ସୁଦ୍ଧା ତ୍ରିଯୁଗ ଜୟୀ ହୋଇପାରିଛନ୍ତି । ଅଧୁନା କଳିଯୁଗରେ ବହୁ ସଂସ୍କୃତ ପଣ୍ଡିତ ସ୍ୱ-ପ୍ରତିଭା ବଳରେ କାଳଜୟୀ କାବ୍ୟ, ସାହିତ୍ୟ, ଇତିହାସ ଆଦି ରଚନା କରି ଜନସମାଜରେ ସମାଦୃତ ହୋଇପାରିଛନ୍ତି । ସେମାନଙ୍କ ମଧ୍ୟରେ ମହାକବି କାଳିଦାସ, ଭାରବୀ, ବାଟଭଟ ଇତ୍ୟାଦି ଅଗ୍ରଗଣ୍ୟ । କାବ୍ୟ ରଚନାରେ କାଳିଦାସଙ୍କର ଶ୍ରେଷ୍ଠ କାବ୍ୟ ରଘୁବଂଶ, କୁମାର ସମ୍ଭବ ତଥା ମେଘଦୂତ ବିଜ୍ଞ ସମାଜରେ ଆଦୃତ । ଯଥା-ଶ୍ଳୋକ-

ଉପମା କାଳିଦାସସ୍ୟ ଭାରବେ ଚାର୍ଥ ଗୌରବମ୍ ।
ନୈଷଧେ ପଦଲାଳିତ୍ୱଂ ମାଘେ ସନ୍ତି ତ୍ରୟୋଗୁଣା ।

କାଳିଦାସ ଥିଲେ ଆର୍ଯ୍ୟବର୍ତ୍ତର ମହାନ୍ ତଥା ଅଦ୍ୱିତୀୟ କବି । ତାଙ୍କ ରଚନାରେ ଛାୟା ପରବର୍ତ୍ତୀ କବିମାନେ ଗ୍ରହଣ କରିଅଛନ୍ତି । ଏହା ସେମାନଙ୍କ କାବ୍ୟରେ ଦେଖାଯାଏ । ଭାରବୀଙ୍କର କାବ୍ୟ ରଚନାର ଶୈଳୀ ଅର୍ଥବୋଧ ଓ ବାଣଭଟଙ୍କର କାବ୍ୟରେ ପ୍ରୟୋଗ ଲାଳିତ୍ୟ ପଦ ସେମାନଙ୍କୁ ଶ୍ରେଷ୍ଠ କବି ରୂପେ ପରିଚିତ କରାଇଥାଏ । ଏମାନଙ୍କ ପରେ ଭାରତବର୍ଷରେ ବହୁକବି ସ୍ୱ ସ୍ୱ ପ୍ରତିଭା ବଳରେ ପ୍ରତିଭାତ ଓ ସ୍ମରଣୀୟ ହୋଇଛନ୍ତି ନିଜର କୃତି ପାଇଁ । ଭାରତ ଭୂମିର ପୂର୍ବ ଭାଗରେ ଥିବା ତତ୍‌କାଳୀନ ଉଡ୍ର, ଓଡ୍ର, କଳିଙ୍ଗ, ଉତ୍କଳ କଙ୍ଗୋଦ, କୋଶଳ ଅଧୁନା ଓଡ଼ିଶାର ଭିନ୍ନ ଭିନ୍ନ ଅଂଶକୁ ନେଇ ନାମିତ ହୋଇଥିଲା ।

ଓଡ଼ିଶାର ଇତିହାସ ମାଦଳାପାଞ୍ଜି ଅନୁସାରେ କବି ଜୟଦେବ ଉତ୍କଳରେ ଥିବା ପୁରୁଷୋତ୍ତମ କ୍ଷେତ୍ରଠାରୁ ବିଂଶକ୍ରୋଶ ଦୂରରେ ପ୍ରବାହିତ ପୁଣ୍ୟତୋୟା ପ୍ରାଚୀ ନଦୀ ଓ କୁଶଭଦ୍ରା ମଧ୍ୟ ଅବବାହିକାର କେନ୍ଦୁବିଲ୍ୱ ଗ୍ରାମରେ ଭୂମିଷ୍ଠ ହୋଇଥିଲେ । ଉପରୋକ୍ତ ପ୍ରାଚୀ ନଦୀ ତୀରରେ ଦ୍ୱାଦଶ ମାଧବ ମନ୍ଦିର, ବହୁତୀର୍ଥ ଓ ମଠ ଇତ୍ୟାଦି ଥିଲା । ପୁରୁଷୋତ୍ତମ ବା ପୁରୀର କ୍ଷେତ୍ରାଧିପତି ମହାବାହୁ ଜଗନ୍ନାଥଙ୍କୁ ଏହି ଗ୍ରାମ ଦେଇ ଅଗଣିତ ଭକ୍ତ ଦର୍ଶନେଚ୍ଛାରେ ପଦବ୍ରଜରେ ଯାଉଥିଲେ । ଏହି ଗ୍ରାମରେ ୧୧୬୭ ମସିହା ମାଘ ଶୁକ୍ଳ ବସନ୍ତ ପଞ୍ଚମୀ ତିଥିରେ ଜୟଦେବ ଏକ କୁଳୀନ ବ୍ରାହ୍ମଣ ପରିବାରରେ ଜନ୍ମିଥିଲେ । ତାଙ୍କ ପିତାଙ୍କ ନାମ ଭୋଜ ଦେବ ଓ ମାତାଙ୍କ ନାମ ରାଧାଦେବୀ ବୋଲି ଗୀତଗୋବିନ୍ଦ କାବ୍ୟର ଦ୍ୱାଦଶ ସର୍ଗଃ ଚତୁର୍ବିଂଶ ପ୍ରବନ୍ଧରେ ଉଲ୍ଲେଖିତ କରିଅଛନ୍ତି । ଯଥା- 'ଶ୍ରୀଭୋଜଦେବ ପ୍ରଭବସ୍ୟ, ରାଧାଦେବୀ ସୁତ ଜୟଦେବ କସ୍ୟ ।' ନିଜ ଜନ୍ମଭୂମିର ପରିଚୟ ସହିତ ମଧ୍ୟ ପଦ୍ମାବତୀଙ୍କ ପରିଚୟ ଗୀତଗୋବିନ୍ଦରେ ଦେଇଛନ୍ତି । ଯଥା- 'ଶ୍ରୀଜୟଦେବ କେନ ହରେରିହ

ପ୍ରଣବେନ । କେନ୍ଦୁବିଲ୍ୱ ସମୁଦ୍ର ସମ୍ଭବ ରୋହିଣୀ ରମଣେନ ।' ଏହା ଗୀତଗୋବିନ୍ଦର ତୃତୀୟ ସର୍ଗଃ ଅଷ୍ଟମ ପ୍ରବନ୍ଧରେ ପ୍ରଦାନ କରିଅଛନ୍ତି । ପତ୍ନୀ ପଦ୍ମାବତୀଙ୍କୁ ମଧ୍ୟ କବି ତାଙ୍କ କାବ୍ୟରେ ସ୍ଥାନିତ କରିଅଛନ୍ତି ଦଶମ ସର୍ଗରେ । ଯଥା- ଜୟତି ପଦ୍ମାବତୀ ରମଣ ଜୟଦେବ କବି ଭାରତୀ ଭଣିତ ମିତି ଗୀତମ୍ । କୌଣସି ବ୍ୟକ୍ତିଙ୍କୁ ଜାଣିବାକୁ ହେଲେ ଆମେ ତାଙ୍କର ନାମ, ଧାମ ପିତୃମାତୃ, କୁଳର ପରିଚୟ ସହିତ ସେହି ରାଜ୍ୟର ନାମ ତଥା ପରିଚୟ ସଂପର୍କରେ ପ୍ରଶ୍ନ କରୁ । ଏ ସମସ୍ତ ଜାଣିବା ପରେ ତାଙ୍କ କୃତି ବା ଶିକ୍ଷାଦୀକ୍ଷା ସଂପର୍କରେ ଜାଣିବାକୁ ଇଚ୍ଛାହୁଏ । ଜୟଦେବଙ୍କ ଜନ୍ମ ପୂର୍ବରୁ ଆମ ରାଜ୍ୟ ଓଡ଼ିଶା ଶାସନ, ଶିକ୍ଷା ସଭ୍ୟତା, ସାହିତ୍ୟ, ସଂସ୍କୃତି ଓ କଳା (ଲଳିତକଳା, ଚିତ୍ରକଳା ଓ ଭାସ୍କର୍ଯ୍ୟ) ଇତ୍ୟାଦି କ୍ଷେତ୍ରରେ ଉତ୍କର୍ଷ ଲାଭ କରିଥିଲା । କେବଳ ସେତିକି ନୁହେଁ, ଏ ରାଜ୍ୟର ଜନତାଙ୍କର ଧର୍ମଧାରଣା ଐଶ୍ୱରୀୟ ଚିନ୍ତା ଓ ଭକ୍ତି ନିବେଦନ ଅନନ୍ୟ ଥିଲା । ଏହି ପ୍ରଦେଶର ଜନସାଧାରଣ ବିଷ୍ଣୁ, ଶିବ, ସୂର୍ଯ୍ୟ, ଦୁର୍ଗା ଇତ୍ୟାଦିଙ୍କର ଆରାଧନା କରିବାର ଜ୍ୱଳନ୍ତ ଉଦାହରଣ ହେଉଛି କଳାକୌଶଳରେ ନିର୍ମିତ ମନ୍ଦିରମାନ । ଯଯାତି କେଶରୀ ଏକାମ୍ରରେ ବହୁଶିବ ମନ୍ଦିର ନିର୍ମାଣ କରି ମନ୍ଦିରମାଳିନୀ ଏକାମ୍ର ନଗର ବୋଲି ଘୋଷଣା କରିଥିଲେ । ନରସିଂହ ଦେବ ଭାରତର ପୂର୍ବଦିଗର ଅର୍କ କୋଣରେ ପ୍ରସିଦ୍ଧ କାରୁକଳା ପୂର୍ଣ୍ଣ ସୂର୍ଯ୍ୟ ମନ୍ଦିର ନିର୍ମାଣ କରିଥିଲେ ଯାହାକି ବହୁ ଶତାବ୍ଦୀ ଧରି କୋଣାର୍କ ନାମରେ ପ୍ରସିଦ୍ଧ ।

ଇନ୍ଦ୍ରଦ୍ୟୁମ୍ନ ପୁରୁଷୋତ୍ତମ କ୍ଷେତ୍ରରେ ନୀଳକନ୍ଦର ଉପରେ ନିର୍ମାଣ କରିଥିଲେ ଶ୍ରୀମନ୍ଦିର ଯାହାକୁ ଲୋକେ ଜଗନ୍ନାଥ ମନ୍ଦିର ବୋଲି ଅଭିହିତ କରିଅଛନ୍ତି । ତତ୍କାଳୀନ ଉତ୍କଳରେ ମଧ୍ୟ ବହୁ ସଂସ୍କୃତ ଭାଷାର କବି, ବିଦ୍ୱାନ ଓ ପଣ୍ଡିତଗଣ ବହୁ ବିଶିଷ୍ଟ କୃତି ଓ କୀର୍ତ୍ତିର ଅଧିକାରୀ ହୋଇଥିଲେ । ଯଥା- ନୈଷଧ କାବ୍ୟ, ବେଣୀ ସଂହାର, ସାହିତ୍ୟଦର୍ପଣ ଅନର୍ଘ ରାଘବ, ପ୍ରବୋଧ ଚନ୍ଦ୍ରୋଦୟ ଓ ଭଗବଦ୍ ଗୀତାର ଭାଷା ଇତ୍ୟାଦି ଇତ୍ୟାଦି । ତତ୍କାଳୀନ ଉତ୍କଳର ସୁଶାସକ ବର୍ଗ ଆଗଙ୍ଗା ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ରାଜ୍ୟର ନିରଙ୍କୁଶ ଶାସକ ଥିଲେ ଏହି ରାଜ୍ୟ (କଳିଙ୍ଗ)ର ରାଜଚକ୍ରବର୍ତ୍ତୀ ଐର ମହାମେଘବାହନଙ୍କର ଦିଗ୍‌ବିଜୟର ବାର୍ତ୍ତା ପ୍ରସାରିତ ହୋଇଥିଲା ଉତ୍ତରରେ ମଥୁରା, ପଶ୍ଚିମରେ ନାସିକ ପର୍ଯ୍ୟନ୍ତ । ପ୍ରଥିତ ଯଥା ଖାରବେଳ ଖଣ୍ଡଗିରିର ଶିଳାଲେଖରେ ତାଙ୍କର ସୁଶାସନ ଓ କୀର୍ତ୍ତିରାଜି ଖୋଦିତ କରିଥିଲେ । ଗାନ୍ଧର୍ବ ବିଦ୍ୟାର ଚର୍ଚ୍ଚା ଓ ସଂଗୀତକାର ଗଣ ଓଡ଼ିଶୀ ସଂଗୀତର ଯଥେଷ୍ଟ ଆଦର ଲାଭକରି ଏହି ରାଜ୍ୟର ସୁଖ୍ୟାତି ବିସ୍ତାର କରିଥିଲେ । ଏହି ସମସ୍ତ ବିଶିଷ୍ଟ ସମ୍ଭାରରେ ପରିପୂର୍ଣ୍ଣ ଉତ୍କଳ ଭୂମିରେ ଭକ୍ତକବି ଶ୍ରୀଜୟଦେବଙ୍କର ଜନ୍ମ ହୋଇଥିଲା । ପିଲାଟି ଦିନରୁ ଜୟଦେବ ଅତି ଗେଲବସରରେ ପିତୃମାତୃଙ୍କଦ୍ୱାରା ଲାଳିତପାଳିତ ହୋଇଥିଲେ । ତାଙ୍କୁ ଯେତେବେଳେ ସାତବର୍ଷ ସେତେବେଳେ ତାଙ୍କ ପିତା ତାଙ୍କର ବ୍ରତୋପନୟନ କର୍ମ କରିଥିଲେ । ଏହାପରେ ଜୟଦେବଙ୍କର ପିତା ଓ ମାତାଙ୍କର ମୃତ୍ୟୁ ହୋଇଥିଲା । ଜୟଦେବ କିଛି ଦିନ ନିଜ ଗୃହରେ ରହିବାପରେ ନିଜ କକେଇଙ୍କ ଦ୍ୱାରା ବିତାଡ଼ିତ ହେଲେ । ସେହି ସମୟରେ ନିଜ ଗ୍ରାମର ତାଙ୍କ ଅନ୍ତରଙ୍ଗ ବନ୍ଧୁ ପରାଶରଙ୍କ ଅନୁରୋଧକ୍ରମେ ତାଙ୍କ ପିତାମାତାଙ୍କ ଇଚ୍ଛାରେ ତାଙ୍କ ଘରେ ରହିଲେ । ଉଭୟ ବନ୍ଧୁ ସାଥି ହୋଇ ପାଠପଢ଼ିବା ଖେଳିବାରେ ସମୟ ବିତାଉଥିଲେ । ସେତେବେଳେ ଶିକ୍ଷାର ମୂଳପୀଠ ଥିଲା ଗ୍ରାମ ଚାଟଶାଳୀ । ଏଠାରେ ଅବଧାନଙ୍କ ଶିକ୍ଷକତାରେ ଓଡ଼ିଆ ଭାଷାର ସ୍ୱରବର୍ଣ୍ଣ ବ୍ୟଞ୍ଜନ-ବର୍ଣ୍ଣ ଶିକ୍ଷା ସହିତ, ବ୍ୟାକରଣ, ଅମରକୋଷ ଓ ସଂସ୍କୃତଭାଷାର ବହୁ କାବ୍ୟ, କବିତା, ଚୌପଦୀ ଇତ୍ୟାଦି ଓ ଗଣିତ ଶାସ୍ତ୍ର ପାଠ କରୁଥିଲେ ।

ଜୟଦେବ ପିଲାଟି ଦିନରୁ ବିଷ୍ଣୁଭକ୍ତ ଥିଲେ । ବନ୍ଧୁ ପରାଶର ଓ ଜୟଦେବ ନିଜ ଗ୍ରାମଠାରୁ ଅନତି ଦୂରରେ ପ୍ରବାହିତ ପ୍ରାଚୀ ନଦୀରେ ଦୈନିକ ସ୍ନାନ କରୁଥିଲେ । ତା'ପରେ କେନ୍ଦୁବିଲ୍ୱରେ ଥିବା ଚତୁର୍ଭୁଜ ବିଷ୍ଣୁ, ଅମ୍ବିକାଦେବୀ ଓ ଶିବଙ୍କର ପୂଜା ଆରାଧନା କରିସାରିଲା ପରେ ଗୃହ ଦେବତାଙ୍କୁ ପୂଜା କରି ଅନ୍ନ ଗ୍ରହଣ କରୁଥିଲେ । ଖୁବ୍ ଅଳ୍ପ ବୟସରେ ପିତୃମାତୃ ହୀନ ହୋଇଥିବା ଜୟଦେବ ମୁଖ୍ୟତଃ ଧାର୍ମିକ ଚିନ୍ତାଧାରାର ଥିଲେ । ଦିନେ ରାତିରେ ତାଙ୍କ ସ୍ୱପ୍ନ ସତ୍ୟ ହେଲା । ଜୟଦେବ ମଧ୍ୟ ସ୍ନାନାନ୍ତେ ରାଧାମାଧବଙ୍କୁ କାନ୍ଧରେ ବହନ କରି ଆଣି ସ୍ୱପ୍ନାଦେଶ ପାଳନ କଲେ କେନ୍ଦୁମୂଳରେ ସ୍ଥାପନ କରି । ଏହାପରେ ବୈଶାଖ ଶୁକ୍ଳ ଅକ୍ଷୟ ତୃତୀୟା ତିଥିରେ ରାଧାମାଧବଙ୍କ ଯୁଗଳ ପ୍ରତିମାଙ୍କର ପ୍ରତିଷ୍ଠା ସହିତ ଯଜ୍ଞ କାର୍ଯ୍ୟ ମଧ୍ୟ କରାଗଲା । ଏହି କାର୍ଯ୍ୟରେ ସ୍ଥାନୀୟ ଜନସାଧାରଣ ସଂପୂର୍ଣ୍ଣ ସହଯୋଗ କରିଥିଲେ । ସେହି ଅକ୍ଷୟ ତୃତୀୟା ତିଥିରେ ଅଧୁନା କେନ୍ଦୁଲି-ଦେଉଳି (କେନ୍ଦୁବିଲ୍ୱ ଗ୍ରାମ)ଠାରେ ଏହି ତିଥିକୁ ସ୍ମରଣ କରିବା ପାଇଁ ନାମକୀର୍ତ୍ତନ, ଯଜ୍ଞ ଇତ୍ୟାଦି ଆୟୋଜିତ କରାଯାଉଅଛି । ଏଥିରେ ରାଜ୍ୟ ସରକାରଙ୍କର ସୂଚନା ଓ ଲୋକ ସଂପର୍କ ବିଭାଗ, ସଂସ୍କୃତି ବିଭାଗ ଓ ସ୍ଥାନୀୟ ଜନସାଧାରଣ ଓ ଇସ୍କନ ସନ୍ନ୍ୟାସୀଗଣ ଭାଗ ନେଉଛନ୍ତି । ଏହି ଦିନଟିକୁ ରାଜ୍ୟ ସରକାର ଜୟଦେବଙ୍କ ଜୟନ୍ତୀ ରୂପେ ପାଳନ କରୁଛନ୍ତି ତାଙ୍କୁ ସ୍ମରଣ କରି । ସେ ତାଙ୍କ ପ୍ରିୟ ଠାକୁର ରାଧାମାଧବଙ୍କର ପରମଭକ୍ତ ଥିଲେ ଓ ତାଙ୍କୁ ପୂଜା ଆରାଧନା ସ୍ତୁତି କରି ଆତ୍ମ ପ୍ରସାଦ ଲାଭ କରୁଥିଲେ । ତାଙ୍କର ଇଚ୍ଛା ନଥିଲା ଗୃହସ୍ଥାଶ୍ରମରେ ଆବଦ୍ଧ ହେବା ପାଇଁ । ଦକ୍ଷିଣ ଓଡ଼ିଶାର ଜଣେ ବୃଦ୍ଧ ବ୍ରାହ୍ମଣ ତାଙ୍କ କନ୍ୟା ସୁନ୍ଦରୀ ପଦ୍ମାବତୀଙ୍କୁ ସାଥିରେ ଧରି ପୁରୀରେ ପହଞ୍ଚି ମହାପ୍ରଭୁ ଜଗନ୍ନାଥଙ୍କ ଚରଣରେ ଏହି କନ୍ୟାଟିକୁ ସମର୍ପଣ କରିବାକୁ ଇଚ୍ଛାପ୍ରକାଶ କରିବାରୁ ପ୍ରଭୁଙ୍କଠାରୁ ସ୍ୱପ୍ନାଦେଶ ହେଲା କେନ୍ଦବୁଲ୍ୱରେ ଥିବା ମୋର ପରମ ଭକ୍ତ ଜୟଦେବଙ୍କୁ ଏ କନ୍ୟା ବିବାହ ଦେବା ପାଇଁ । ତଦନୁଯାୟୀ ବୃଦ୍ଧ ବ୍ରାହ୍ମଣ କେନ୍ଦୁବିଲ୍ୱକୁ ଯାଇ ଜୟଦେବଙ୍କୁ ପ୍ରଭୁଙ୍କ ଇଚ୍ଛା ଜଣାଇଥିଲେ । ଜୟଦେବ ଏହା ବିଶ୍ୱାସ ନକରି ତାଙ୍କୁ ଫେରିଯିବା ପାଇଁ କହିଲେ । ସେହିଦିନ ରାତ୍ରିରେ ସେ ଜଗନ୍ନାଥଙ୍କର ଆଦେଶ ପ୍ରାପ୍ତ ହେଲେ ସ୍ୱପ୍ନରେ କନ୍ୟାକୁ ଗ୍ରହଣ କରିବା ପାଇଁ । ଏହି ଘଟଣା ପରେ ଜୟଦେବ ପ୍ରଭୁଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି ପଦ୍ମାଙ୍କୁ ନିଜ ଆଶ୍ରମରେ ରହିବା ପାଇଁ ସ୍ୱୀକୃତି ଦେଲେ । ଜୟଦେବ ସ୍ୱଭାବତଃ ଥିଲେ ବିଷ୍ଣୁଭକ୍ତ ଓ ଗାନ୍ଧର୍ବ ବିଦ୍ୟାନିପୁଣ

ଓ ପଦ୍ମାବତୀ ଥିଲେ ନୃତ୍ୟ ପଟ୍ଟୟସୀ ନାରୀ । ଏଣୁ ଉଭୟ ଏକ ପ୍ରଶସ୍ତ ପଥରେ ହେଲେ ପଥିକ । ଆରମ୍ଭ ହେଲା କାବ୍ୟ ରଚନା । କେନ୍ଦୁବିଲ୍ୱ ଗ୍ରାମଟିରେ ଥିବା ନାନା ଜାତିର ବୃକ୍ଷ-ଯଥା- ତାଳ, ତମାଳ, ନାରିକେଳ ପୁନାଙ୍ଗ, ଗୁଜାକ, ବଟ, ଅଶ୍ୱତ୍ଥ, ବକୁଳ ଓ ଆମ୍ର ଇତ୍ୟାଦି ଫଳପ୍ରସୂ ବୃକ୍ଷ ଓ ମାଧବୀ, ମାଳତୀ ମଲ୍ଲୀ, କେତକୀ, କରବୀର, ପାଟଳୀ, ପଳାସ ଓ ଲବଙ୍ଗଲତା ଇତ୍ୟାଦି ବହୁ କୁସୁମ ଶୋଭିତ ବୃକ୍ଷ ସମୂହ ତଥା ବହୁ ପୁଷ୍କରିଣୀ, ଡୋଗ, କୂପ ଇତ୍ୟାଦି ଥିଲା । ଏଥିସହିତ ସେଠାରେ ଯୋଗୀଜନ ମନଭୁଲା ବହୁ ବିହଙ୍ଗଙ୍କର କାକଳି ଶୁଣିବାକୁ ମିଳୁ ଥିଲା । ସେଭଳି ଶୋଭାଯୁକ୍ତ ପ୍ରାକୃତିକ ପରିବେଶ କବିବର ଜୟଦେବଙ୍କୁ ପ୍ରେରଣା ପ୍ରଦାନ କଲା ଗୀତ ଗୋବିନ୍ଦ କାବ୍ୟ ରଚନା କରିବା ପାଇଁ । ଏହି କାବ୍ୟ ରାଧାମାଧବଙ୍କୁ ନେଇ ରଚିତ ଓ ତାଙ୍କ ଚରଣରେ ଅର୍ପିତ କରିବା ପାଇଁ କବି ମନସ୍ଥିର କରିଥିଲେ । ଏହି କାବ୍ୟଟି ଦ୍ୱାଦଶ ସର୍ଗ ଓ ଚବିଶ ଗୋଟି ପ୍ରବନ୍ଧରେ ରଚିତ ହୋଇଥିଲା । ସଂସ୍କୃତ ଭାଷାରେ ପ୍ରତ୍ୟେକ ସର୍ଗରେ ଆଠଟି ପଦ ଓ ଏହାର ଗାୟନ ଶୈଳୀ ପାଇଁ ନିର୍ଦ୍ଦିଷ୍ଟ ରାଗ ତାଳ, ଲୟ ଯତିପାତ ଇତ୍ୟାଦି ମଧ୍ୟ ସୂଚିତ ହୋଇଥିଲା । ସର୍ଗଃର ଗାୟନ ପଦ୍ଧତିର ଲକ୍ଷଣମାନ ମଧ୍ୟ ଲିପିବଦ୍ଧ ହୋଇଥିଲା । ତତ୍କାଳୀନ ସଂସ୍କୃତ ଭାଷାରେ ରଚିତ ସଂଗୀତରେ ବହୁ ରାଗ ରାଗିଣୀର ସ୍ଥାନ ଥିଲା ।

ଗୀତଗୋବିନ୍ଦର ପ୍ରଥମ ସର୍ଗର ତୃତୀୟ ଶ୍ଳୋକର 'ଯଦି ହରି ସ୍ମରଣେ ସରସଂ ମନୋ ଯଦ୍ ବିଳାସ କଳାସୁ କତୁ ହଳଂ ମଧୁର କୋମଳ କାନ୍ତ ପଦାବଳୀ ଶୃଣୁତଦା ଜୟଦେବ ସରସ୍ୱତୀ ।' ଯେଉଁ ଭକ୍ତଜନଙ୍କ ମନ ହରିଙ୍କ ଚରଣରେ ସମର୍ପିତ ସେମାନେ ବିଳାସ କଳାରେ କୌତୁହଳ ହୋଇ ଏହି ମଧୁର କୋମଳ ସୁନ୍ଦର ପଦମାନ ଶୁଣିଲେ କୃତାର୍ଥ ହେବେ । ଜୟଦେବଙ୍କ ସହିତ ପଦ୍ମାବତୀଙ୍କର ଏକତ୍ର ବାସ ପ୍ରଭୁଙ୍କ ଚରଣରେ ସମର୍ପିତ ମନ ଓ ଏକଚିନ୍ତାର ବୈଷ୍ଣବୀୟ ସ୍ରୋତରେ ଭାସମାନ ଭକ୍ତି ରସାପ୍ଲୁତ ଆତ୍ମା ଇତ୍ୟାଦିର ପରିସ୍ଫୁଟନ ହୋଇଛି ଗୀତଗୋବିନ୍ଦରେ । ଗୀତଗୋବିନ୍ଦର ପ୍ରଥମ ସର୍ଗରେ ପ୍ରଥମ ଗୀତ ଦଶାବତାର ବର୍ଣ୍ଣନା ଓ ଦ୍ୱିତୀୟ ଗୀତରେ ଶ୍ରିତ କମଳାକଚେ ମଣ୍ଡନମ୍ ଓ ତୃତୀୟ ଗୀତରେ ବସନ୍ତ ଋତୁର ବିସ୍ତୃତ ବର୍ଣ୍ଣନା ସହିତ କୁଂଜରେ ରାଧାମାଧବଙ୍କର ଏକାନ୍ତ ଉପସ୍ଥିତି କାମନା ବିଷୟରେ ସେ ତାଙ୍କ ସଖୀଙ୍କୁ ଜଣାଇଥିଲେ ।

ବସନ୍ତ ରାଗରେ - ଯତି ତାଳରେ ଗାଇବାର ନିର୍ଦ୍ଦେଶ କରାଯାଇଅଛି କାବ୍ୟରେ । କବି ଜୟଦେବଙ୍କର ଲେଖା ସର୍ଗ ପରେ ସର୍ଗ ଚାଲିଥାଏ । ଦଶମ ସର୍ଗର ଲେଖା ଆରମ୍ଭ ହେଲା । ମାଧବ ରାଧାଙ୍କୁ ଚାଟୁ ବଚନ କହି ଭୁଲାଇବାକୁ ଚାହୁଁଥାଆନ୍ତି ପ୍ରେମ ନିବେଦନ କରି । ରାଧା କିନ୍ତୁ ନିଶ୍ଚଳ ସ୍ତମ୍ଭପରି ଠିଆ ହୋଇ ଶୁଣୁ ଥାଆନ୍ତି । ଏହିପରି ମାଧବଙ୍କର ପ୍ରେମ ଜର୍ଜରିତ ମନର ଅବସ୍ଥା ଥାଏ । ଏହାର ପରବର୍ତ୍ତୀ ପଦ କବିଙ୍କର ମନକୁ ଛୁଇଁଲା ଯେ - ନାଗର ରାଜ ମାଧବ ରାଧାଙ୍କୁ ଅତି ବିନୟ ହୋଇ ପ୍ରେମ ନିବେଦନ କରିବେ- ହେ ସୁନ୍ଦରି ! 'ସ୍ଥଳ କମଳ ରଞ୍ଜନଂ ମମ ହୃଦୟ ରଞ୍ଜନମ୍, ଜନିତ ରତି ରଙ୍ଗ ପରଭରଗମ୍' ଓ ତା' ପରବର୍ତ୍ତୀ ଶ୍ଳୋକରେ ଏକ ପଦ ଜୟଦେବଙ୍କୁ ବିଚଳିତ କଲା - 'ସ୍ମର ଗରଳ ଖଣ୍ଡନମ୍ ମମ ଶିରସି ମଣ୍ଡନଂ, ଦେହି ପଦ ପଲ୍ଲବ ମୁଦାରଂ ।' ସେ ଲେଖା ବନ୍ଦ କରି ସ୍ନାନ କରିବା ପାଇଁ ପ୍ରସ୍ତୁତ ହେଲେ । ସ୍ନାନ ପାଇଁ ପ୍ରାଚୀ ନଦୀକୁ ଗଲେ । ଏହି ପଦଟିକୁ ଯେ ମୋ' ଭକ୍ତ କେବେ ହେଲେ ଲେଖିବ ନାହିଁ ଏହା ଜାଣିଲେ ଭକ୍ତପ୍ରିୟ ମାଧବ । ମହାପ୍ରଭୁ କିଛି ସମୟ ପରେ ଜୟଦେବଙ୍କ ରୂପରେ ଫେରିଆସି ପଦ୍ମାଙ୍କୁ ଖେଦା ଓ ଲେଖନୀ ଆଣିବା ପାଇଁ କହିଲେ । ଯେଉଁ ପଦଗୋଟି ଜୟଦେବ ଲେଖିବା ପାଇଁ ମନସ୍ଥ କରି ପ୍ରଭୁଙ୍କୁ ଅପମାନ ହେବ ଭାବି ଲେଖାବନ୍ଦ କରିଥିଲେ, ତାହା ପୂରଣ କରି ସ୍ୱପଥରେ ବାହାରିଗଲେ । ପଦ୍ମାବତୀଙ୍କୁ ପଥ ମଧ୍ୟରେ ପଦଟି ମନେ ପଡ଼ିବାରୁ ଏପରି ଫେରି ଆସି ଲେଖି ଦେଲି ବୋଲି କହି ଫେରିଗଲି । ନଦୀରୁ ସ୍ନାନ ସାରି ଜୟଦେବ ଫେରି ନିଜ ଆଶ୍ରମରେ ପହଞ୍ଚି ଦେବତା ପୂଜା ପରେ ଭୋଜନ କରି ବିଶ୍ରାମ ନେଲେ । ତା'ପରେ ଯେତେବେଳେ ପୁନରାୟ ଲେଖା ଆରମ୍ଭ କଲେ ଦେଖିଲେ ତାଙ୍କ ମନ ମଧ୍ୟରେ ଚିନ୍ତା କରିଥିବା ପଦ ଗୋଟି ଖେଦାରେ ଲେଖା ହୋଇଅଛି । ଏ କି ଆଶ୍ଚର୍ଯ୍ୟ, କିଏ ଏହା ଲେଖିଲା । ପଦ୍ମାଙ୍କ ବର୍ଣ୍ଣନାରୁ ସବୁ ଜାଣି ଉକ୍ତିରେ ପାଗଳ ପ୍ରାୟ ହୋଇ ବିଶ୍ୱାସ କଲେ ଏହା ନିଜେ ମାଧବ ହିଁ ଲେଖିଛନ୍ତି । ପଦ୍ମା ଓ ଜୟଦେବ ସ୍ୱର୍ଗୀୟ ଆନନ୍ଦରେ ନିଜକୁ ଭୁଲି ଗଲେ । ପ୍ରଭୁଙ୍କର ଅଶେଷ କରୁଣା ଯେ ଆମ ଦୁହିଁଙ୍କ ପାଇଁ ଏହାଠାରୁ ଅଧିକ କ'ଣ ବା ଦରକାର । ପ୍ରଭୁ ସ୍ୱପ୍ନରେ ସମସ୍ତ ବୃତ୍ତାନ୍ତ ଜୟଦେବଙ୍କୁ କହିଲେ 'ରାଧା ଓ ମାଧବ ଏକ ମଞ୍ଜିର ଦୁଇ ଗୋଟି ଫାଳ । ସେ ଓ ମୁଁ ଏକ ବୃନ୍ତର ଗୋଟିଏ ଫାଳ । ତୁମେ ଅଚିନ୍ତାରେ କାବ୍ୟ ପୂରଣ କରି ମୋତେ ଅର୍ପଣ କର ।'

ଏହା ପରେ ଭକ୍ତକବି ଜୟଦେବ ପଦ୍ମାଙ୍କ ସହିତ ପୁରୀକୁ ଯାଇ ମହାପ୍ରଭୁ ଜଗନ୍ନାଥଙ୍କୁ ଦର୍ଶନ କରି ସେଠାରେ ଗୁଣ୍ଡିଚା ମନ୍ଦିର ନିକଟରେ ଏକ ଆଶ୍ରମ କରି ବାସ କଲେ । କବି ଦୈନିକ ଶ୍ରୀମନ୍ଦିର ପରିସରରେ ଗୀତଗୋବିନ୍ଦର ଅମୃତମୟ ପଦଗୁଡ଼ିକ ଗାୟନ କରି ଉକ୍ତ ପଣ୍ଡା ପ୍ରତିହାରୀମାନଙ୍କ ମଧ୍ୟରେ ଜଣାଶୁଣା ହେଲେ । କବିଙ୍କର କାବ୍ୟ ସଂପର୍କରେ ଓଡ଼ିଶାର ମଉଡ଼ମଣି ଗଜପତି ଏହା ଜାଣିପାରି କବିଙ୍କୁ ମନ୍ଦିର ମଧ୍ୟରେ ଗୀତଗୋବିନ୍ଦ ଗାଇବା ପାଇଁ ଆଦେଶ ଦେଲେ । ଗୀତଗୋବିନ୍ଦ ମନ୍ଦିରରେ ଥିବା ଭିତର ଗାଉଣୀରେ ଜଗନ୍ନାଥଙ୍କ ପହଡ଼ ସମୟରେ ବୋଲା ହେବ । ଗୀତଗୋବିନ୍ଦ ବୋଲା ହେଲାବେଳେ ମହାପ୍ରଭୁ କେନ୍ଦୁଲି ଖଣ୍ଡୁଆ ପାଟ ବା କେନ୍ଦୁଲି ଫେଟାରେ ଘୋଡ଼ାଇ ହେବା ରାଜାଙ୍କର ଆଦେଶ ଥିଲା । ଏହାର ନାମ ଚଞ୍ଚୁ ସେବା ବା ଗୀତଗୋବିନ୍ଦ କୁହାଯାଏ । ଧୀରେ ଧୀରେ ଗୀତଗୋବିନ୍ଦର ଖ୍ୟାତି ସାରା ଭାରତବର୍ଷର ଭକ୍ତଗଣଙ୍କ ମାଧ୍ୟମରେ ବ୍ୟାପିଗଲା । ବହୁ କବି, ଲେଖକ, ସାଧୁ ସନ୍ଥ ଗୀତଗୋବିନ୍ଦର କାନ୍ତ କୋମଳ ଲାଳିତ୍ୟ ପଦ ସଂଯୋଜନା ଓ ସରଳ ସଂସ୍କୃତ କବିତାର ଭାଷ୍ୟରେ ମୋହିତ ହୋଇ କବିଙ୍କୁ ଶତମୁଖରେ ବିଭିନ୍ନ ପ୍ରାନ୍ତରେ ପ୍ରଶଂସା କଲେ । ଜୟଦେବଙ୍କ ପାଇଁ ଉତ୍କଳବାସୀ ଗର୍ବିତ ।

ଅଭ୍ୟୁଦୟ ନଗର
ଡୁମୁଡୁମା, ଭୁବନେଶ୍ୱର

# ଉତ୍କଳରେ ଜୟଦେବ ଓ ଦେବଦାସୀ ନୃତ୍ୟ

ନିରଞ୍ଜନ ଦାଶ

ଦ୍ୱାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ ଥିଲା ଉତ୍କଳର ଗୌରବମୟ ସୁବର୍ଣ୍ଣ ଯୁଗ । ଯେଉଁ ଯୁଗରେ ଗଙ୍ଗବଂଶର ରାଜାମାନେ ନିଜର ସୁଦକ୍ଷ ସୈନ୍ୟ ପରିଚାଳନା ପୂର୍ବକ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଅଞ୍ଚଳକୁ ନିଜ ଶାସନାଧୀନ କରିରଖିଥିଲେ ଓ ସମଗ୍ର ଉତ୍କଳଖଣ୍ଡରେ ଶାନ୍ତି ବିରାଜମାନ କରିଥିଲା । ଉତ୍କଳୀୟମାନେ କେବଳ ବୀରତ୍ୱରେ ନୁହେଁ, ଉଭୟ ଶିକ୍ଷା, ଦୀକ୍ଷା, ପାଣ୍ଡିତ୍ୟର ଗାରିମାରେ ଗାରିମାମୟ ଥିଲେ । ଯେଉଁ ସମୟରେ ଗୌଡ଼ ଦେଶର ରାଜା ଲକ୍ଷ୍ମଣ ସେନ ବକ୍ତିୟାର ଖିଲିଜଙ୍କ ଦ୍ୱାରା ପରାସ୍ତ ହୋଇ ଉତ୍କଳ ସମ୍ରାଟଙ୍କ ଶରଣାପନ୍ନ ଥିଲେ, ଠିକ୍ ସେହି ସମୟରେ ଜୟଦେବ ଉତ୍କଳ ପ୍ରଦେଶ ବା ତଥାକଥିତ ଓଡ଼ିଶା ପ୍ରଦେଶର କେନ୍ଦୁଲୀ ବା କେନ୍ଦୁବିଲ୍ୱ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ ।

ମହାକବି ଜୟଦେବଙ୍କ ଜନ୍ମସ୍ଥାନକୁ ନେଇ ନାନା ତର୍ଜମା ଚାଲିଥିଲେ ମଧ୍ୟ ସ୍ୱର୍ଗୀୟ ଗଣେଶ ପ୍ରସାଦ ପରିଜାଙ୍କ ପ୍ରବନ୍ଧ 'ଓଡ଼ିଶାର ଜୟଦେବ'ରେ ନିମ୍ନ ପ୍ରକାରେ ତଥ୍ୟ ଦେଇଛନ୍ତି, ସେ ଲେଖିଛନ୍ତି ଯେ, 'ପ୍ରାଚୀନ ତତ୍ତ୍ୱ ଅନୁସାରେ କେନ୍ଦୁଲୀ ଗ୍ରାମସ୍ଥିତ କେନ୍ଦୁଗଛ ମୂଳରେ ମୁଗୁନି ପଥରରେ ନିର୍ମିତ ଗୋଟିଏ ଜାଗେଶ୍ୱରୀ ମୂର୍ତ୍ତି ଏବଂ ବିଲ୍ୱଗଛ ମୂଳରେ ଗୋଟିଏ ଅମ୍ବିକା ମୂର୍ତ୍ତି ପୂଜା ପାଉଥିବାରୁ ଏହି ସ୍ଥାନ କେନ୍ଦୁବିଲ୍ୱ ନାମରେ ପ୍ରସିଦ୍ଧ । ଅମ୍ବିକା ଦେବୀଙ୍କ ଦ୍ୱାରଦେଶରେ ଗୋଟିଏ ସଂକ୍ଷିପ୍ତ ଅଭିଲେଖ ଅଛି । ତାହା 'ଜୟଦେବ ହରେ' । ଏହି ମନ୍ଦିର ୧୧୧୨ ଶକାବ୍ଦ ବା ୧୧୯୦ ଖ୍ରୀଷ୍ଟାବ୍ଦରେ ଜୟଦେବଙ୍କ ସ୍ମୃତି ଉଦ୍ଦେଶ୍ୟରେ ନିର୍ମିତ ହୋଇଥିଲା । ସେହି ଦେବୀ ମନ୍ଦିରରେ ଦେବୀଙ୍କ ମହାପୂଜା ସମୟରେ ସପ୍ତଶତୀ ଚଣ୍ଡୀ ପାଠ କରାଯାଇ ପରେ 'ଗୀତଗୋବିନ୍ଦ' ପାଠ କରାଯାଏ ।'

ସେ ତାଙ୍କ ଯୌବନ କାଳରେ ଶିକ୍ଷା ଶେଷ କରି କଳିଙ୍ଗରେ ଶ୍ରୀ ବୈଷ୍ଣବ ଧର୍ମର କେନ୍ଦ୍ରପୀଠ, ଶ୍ରୀକୂର୍ମରେ ଶ୍ରୀ ପଛାୟ ବୈଷ୍ଣବ ଧର୍ମରେ ଦୀକ୍ଷା ଲାଭ କରିଥିଲେ । ସେ ସମୟରେ ସେ ସାଧୁ (ବୈଷ୍ଣବ) ରୂପେ ପୂଜିତ ହେଲେ । କବି ଜୟଦେବ ନିଜର ବହୁ ଶିଷ୍ୟ ଶିଷ୍ୟାଙ୍କ ଗହଣରେ ସ୍ୱ ଜନ୍ମଭୂମି କଳିଙ୍ଗକୁ ଫେରିଆସି ଶ୍ରୀ କୃତ୍ତିବାସଙ୍କ (ଲିଙ୍ଗରାଜ) ମନ୍ଦିରରେ ମେଡ଼ମା ଦେବୀଙ୍କ ଅଖଣ୍ଡ ଦୀପଦାନ ସମୟରେ ଉପସ୍ଥିତ ଥିବା ବିଷୟ ମନ୍ଦିରରେ ଥିବା ଶିଳାଲେଖରୁ ଜଣାଯାଏ ।

କଳିଙ୍ଗରେ ଥିବା ଦେବମନ୍ଦିରମାନଙ୍କରେ 'ସାନି ସମ୍ପ୍ରଦାୟ'ର ନର୍ତ୍ତକ ନର୍ତ୍ତକୀମାନେ ନୃତ୍ୟ ପରିବେଷଣ ପାଇଁ ନିଯୁକ୍ତ ହୋଇଥିଲେ । ସେମାନଙ୍କୁ ରାଜାଙ୍କ ତରଫରୁ କଳିଙ୍ଗ-ପରୀକ୍ଷା-ପାତ୍ର ଶ୍ରୀ କୋଟିନାଥ ପଣ୍ଡା ନାଟ୍ୟବୃତ୍ତି ସ୍ୱତ୍ୱ ବଣ୍ଟନ କରି ତାହା 'ଅର୍ଥ ବହି'ରେ ଲେଖି ରଖିଥିଲେ । ସମସ୍ତଙ୍କ ଅବଗତି ନିମନ୍ତେ ଶିଳାଲିପି ଖୋଦନ କରାଇ ନିର୍ଦ୍ଦିଷ୍ଟ ମନ୍ଦିରମାନଙ୍କରେ ସଂଲଗ୍ନ କରାଇଥିଲେ ।

ସେହିପରି ମହାରାଜା ଉଦ୍ୟୋତ କେଶରୀଙ୍କ ମାତା ଓ ଯଯାତି ମହାଶିବ ଗୁପ୍ତଙ୍କ ରାଣୀ କୋଳାବତୀ ଦେବୀ ଭୁବନେଶ୍ୱରଠାରେ ବ୍ରହ୍ମେଶ୍ୱରଙ୍କ ମନ୍ଦିର ନିର୍ମାଣ କରାଇ ସେଥିରେ ନୃତ୍ୟ ସଙ୍ଗୀତ ପରିଚାଳନା ସକାଶେ ତିନିଜଣ ନାନାବିଧ ରତ୍ନ ଅଳଙ୍କାର ବିଭୂଷିତା 'ଦାରିକା' ନିଯୁକ୍ତ କରିଥିଲେ । ମାତ୍ର ମହାରାଜା ଚୋଡ଼ ଗଙ୍ଗଦେବ ଉତ୍କଳ ଜୟ କଲାପରେ ଶ୍ରୀ ପୁରୁଷୋତ୍ତମଙ୍କ ପବିତ୍ର ଶ୍ରୀମନ୍ଦିରରେ ନୃତ୍ୟସଙ୍ଗୀତ ପରିଚାଳନା ସକାଶେ ବାରବନିତା 'ଦାରିକା'ମାନଙ୍କ ପରିବର୍ତ୍ତେ କଳିଙ୍ଗରୁ ସଙ୍ଗୀତ ବିଦ୍ୟାରେ ପାରଦର୍ଶିତା ଲାଭ କରିଥିବା 'ସାନି ସମ୍ପ୍ରଦାୟ'ର କେତେକ ପରିବାରଙ୍କୁ ଶ୍ରୀକୂର୍ମରୁ ଅଣାଇ ଶ୍ରୀକ୍ଷେତ୍ରରେ ଥଇଥାନ କରାଇଥିଲେ । ସେମାନଙ୍କୁ 'ଗୁଡ଼ି-ସାନି' ବା 'ଗୁଡ଼ି-ସେଟି' କୁହାଯାଉଥିଲା । ତେଲେଙ୍ଗା ଭାଷାରେ 'ଗୁଡ଼ି' ଅର୍ଥ ମନ୍ଦିର ଓ 'ସାନି' ଅର୍ଥ 'ନର୍ତ୍ତକୀ' ।

ସଂସ୍କୃତ ଭାଷାରେ କବି ଜୟଦେବଙ୍କ ରଚିତ 'ଗୀତଗୋବିନ୍ଦ' ସର୍ବପ୍ରଥମେ ସେହି ସାନି ସମ୍ପ୍ରଦାୟଙ୍କଦ୍ୱାରା ପରିବେଷିତ ହୋଇଥିଲା । କବି ଜୟଦେବ ଥିଲେ ପ୍ରକୃତରେ ମହାକବି । ତାହାଙ୍କଦ୍ୱାରା ରଚିତ 'ଗୀତଗୋବିନ୍ଦ' ସଂସ୍କୃତ ସାହିତ୍ୟର ଏକ ଅନବଦ୍ୟ ଅବଦାନ । ଏହା ଏଭଳି ଏକ ମହାକାବ୍ୟ, ଯାହା ଭାରତର କୋଣେ କୋଣେ ପରିଚିତ । ଜଣେ କବି ଭାବରେ ନୁହେଁ । ଏକାଧାରରେ ଜଣେ ରସିକ ସଙ୍ଗୀତଜ୍ଞ, ଗାୟକ ଏବଂ ସମ୍ଭବତଃ ନୃତ୍ୟ ବିଶାରଦ ଥିଲେ ।

ସଂସ୍କୃତ ଭାଷାବିତ୍ କବି ଜୟଦେବଙ୍କ ପିତାଙ୍କ ନାମ ଭୋଜଦେବ ଓ ମାତା ବାମାଦେବୀ ଥିଲେ । କବି କୃଷ୍ଣଭକ୍ତ ଥିଲେ । ତାଙ୍କ ବିବାହ ବିଷୟରେ ଏକ ଅଦ୍ଭୁତ କାହାଣୀ ଶୁଣାଯାଏ ।

କବି ପ୍ରଥମେ ବିବାହ କରିବାକୁ ଇଚ୍ଛା କରୁନଥିଲେ । ମାତ୍ର ଦୈବ ନିର୍ଦ୍ଦେଶ ଅନୁଯାୟୀ ଏକଦା ଦେବଶର୍ମା ନାମକ ଜଣେ ଅପୁତ୍ରିକ ବ୍ରାହ୍ମଣ ଶ୍ରୀକ୍ଷେତ୍ରକୁ ଆସି ଶ୍ରୀଜଗନ୍ନାଥଙ୍କ ନିକଟରେ ପୁତ୍ର ଲାଭ ପାଇଁ ପ୍ରାର୍ଥନା କରିଥିଲେ । ସମୟକ୍ରମେ ତାଙ୍କର ପ୍ରଥମେ କନ୍ୟା ସନ୍ତାନ ଲାଭ ହୋଇଥିଲା । ପ୍ରତିଶ୍ରୁତି ରକ୍ଷାପୂର୍ବକ ସେ ନିଜ କନ୍ୟାକୁ 'ଦେବଦାସୀ' କରାଇବା ନିମନ୍ତେ ଶ୍ରୀକ୍ଷେତ୍ରକୁ ଆଣି ଆସିଥିଲେ । ଅପୂର୍ବ ସୁନ୍ଦରୀ, ସର୍ବଗୁଣସମ୍ପନ୍ନା କନ୍ୟା 'ପଦ୍ମାବତୀଙ୍କୁ ଦେବଦାସୀ ହେବାର ନିଯୁକ୍ତି ମିଳିନଥିଲା । ମହାପ୍ରଭୁଙ୍କ ଆଦେଶ ପାଇ ଶ୍ରୀଧାମରେ ରହିଥିବା ଜୟଦେବଙ୍କୁ କନ୍ୟାଦାନ କରିବାର ଆଶା ନେଇ ସେ ତାଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ସେଠାରେ ପଦ୍ମାବତୀ ସଙ୍ଗୀତ, ନୃତ୍ୟ ଗାନ୍ଧର୍ବ ବିଦ୍ୟାରେ ସୁପଣ୍ଡିତା ହୋଇଉଠିଲେ । ଶ୍ରୀଜୟଦେବଙ୍କ ସଂସର୍ଗରେ ପତ୍ନୀ ପଦ୍ମାବତୀ ନୃତ୍ୟ ନିପୁଣା, ସଙ୍ଗୀତ ଶାସ୍ତ୍ର ବିଶାରଦା 'ଦେବଦାସୀ' ଭାବରେ ପରିଚିତା ହୋଇଥିଲେ । ଦେବଦାସୀ ନୃତ୍ୟ ସମ୍ବନ୍ଧରେ ସମ୍ୟକ୍ ସୂଚନା ଦିଆଯାଇପାରେ । ଦେବଦାସୀ ଅର୍ଥାତ୍ ଦେବତାଙ୍କ ଦାସୀ, ଏହାଙ୍କୁ 'ମାହାରୀ' ବୋଲି ମଧ୍ୟ କୁହାଯାଇଥାଏ । 'ମାହାରୀ' ଶବ୍ଦର ଅର୍ଥ ମହାନ୍ ନାରୀ - ଅର୍ଥାତ୍ ନାରୀମାନଙ୍କ ମଧ୍ୟରେ ଯେ ଶ୍ରେଷ୍ଠା । ଦେବତାଙ୍କ ମନୋରଞ୍ଜନକାରିଣୀ । ଉତ୍କଳୀୟ ସଂସ୍କୃତିରେ 'ଦେବଦାସୀ' ନୃତ୍ୟ ଏକ ମହାନ୍ ସ୍ଥାନ ଗ୍ରହଣ କରିଆସିଛି । ଶ୍ରୀଜଗନ୍ନାଥଙ୍କ ଚଉଷଠୀ ଉପଚାରର ସେବା ପୂଜା ସହ ଶୟନ କାଳରେ, ଯାତ୍ରା ସମୟରେ, ଚନ୍ଦନଲାଗି କାଳରେ, ଆଲଟ କାଳରେ, ସକାଳ ଧୂପ ବେଳାରେ, ଚନ୍ଦନଯାତ୍ରା ସମୟରେ, ଚାପ ଉପରେ, ମନ୍ଦିର ପ୍ରାଙ୍ଗଣରେ ନୃତ୍ୟ ଓ ଗୀତ ଗାନ କରିଥାଆନ୍ତି ।

ପରମ୍ପରା ଅନୁଯାୟୀ ଏହି ମାହାରୀ ଚାରି ଭାଗରେ ବିଭକ୍ତ । ଯଥା- ଭିତର ଗାଉଣୀ, ନାଚୁଣୀ, ବାହାର ଗାଉଣୀ ଓ ଗାଉଡ଼ଷାଣୀ । ମାହାରୀ ନିଯୋଗରେ ଦୁଇଜଣ ଶିକ୍ଷୟିତ୍ରୀ ନିଯୁକ୍ତ ରହି ମାହାରୀମାନଙ୍କୁ ନୃତ୍ୟ ଶିକ୍ଷା ଦେଇଥାଆନ୍ତି ।

ପ୍ରାଚୀନ ଉତ୍କଳର ଅତୀତ କୀର୍ତ୍ତିରାଜିକୁ ସ୍ମରଣ କଲେ ଯେପରି ଗୌରବପୂର୍ଣ୍ଣ ସେହିଭଳି ଧର୍ମୀୟ, ସଙ୍ଗୀତଭିତ୍ତିକ, ନାନା ଚାରୁକାରୁ କୀର୍ତ୍ତି ବିମଣ୍ଡିତ ବୋଲି ଅନୁଭବ କରିହୁଏ । ଉତ୍କଳରେ ଯୁଗେ ଯୁଗେ ଭକ୍ତକବି, ମହାକବି, ଶାସ୍ତ୍ରଜ୍ଞ, ମହାପଣ୍ଡିତ ଜୟଦେବ ରହିଥିବେ ଯେପର୍ଯ୍ୟନ୍ତ ଶ୍ରୀଜଗନ୍ନାଥ ମନ୍ଦିରରେ ଗୀତଗୋବିନ୍ଦ ଗାନ ହେଉଥିବ । କଳାର ମାହୋଲରେ କବି 'ଜୟଦେବ' ଓ ପ୍ରଥମ ଦେବଦାସୀ କବି ପତ୍ନୀ 'ପଦ୍ମାବତୀ' ରହିଥିବେ ଯୁଗ ଯୁଗ ଯାଏଁ ।

କ୍ୱା.ନଂ.- ୨ଆର୍.ବି. ୧୭/୪
ୟୁନିଟ୍-୮, ଭୁବନେଶ୍ୱର-୧୨



# ଅଲୌକିକ ଜୟଦେବ ଓ ଗୀତଗୋବିନ୍ଦ





**ଜୟଦେବ ଓ ପଦ୍ମା**

ଉତ୍କଳଖଣ୍ଡର କେନ୍ଦୁବିଲ୍ୱ ଗ୍ରାମରେ ସେତେବେଳେ ଜୟଦେବ ନାମରେ ଜଣେ ପରମ ବୈଷ୍ଣବ ଭକ୍ତ କୁଳୀନ ବ୍ରାହ୍ମଣ ଘରେ ଜନ୍ମ ହୋଇଥିଲେ । ସେ ଥିଲେ ପରମ ବିଷ୍ଣୁଭକ୍ତ, ମହାପଣ୍ଡିତ, ଜିତେନ୍ଦ୍ରିୟ, ବିରକ୍ତ, ନିଃସଙ୍ଗ, ଉଦାସୀ । ସେ ଦିନେ ଶ୍ରୀକ୍ଷେତ୍ରରେ ପ୍ରବେଶ କରି ଏକ ବିଶାଳ ବଟବୃକ୍ଷ ତଳେ ରହି ଶ୍ରୀଜଗନ୍ନାଥଙ୍କ ସେବା କରିବାରେ ଲାଗିଲେ ।

ସେହି ସମୟରେ ଦକ୍ଷିଣ ଦେଶରେ ଜଣେ ଅପତ୍ୟବିହୀନ ବ୍ରାହ୍ମଣ ରହୁଥିଲେ । ସନ୍ତାନସନ୍ତତି କାମନା କରି ସେ ଶ୍ରୀକ୍ଷେତ୍ର ଆସି ଜଗନ୍ନାଥଙ୍କୁ ସେବା କଲେ । ତାଙ୍କର ପୁତ୍ର ଅଥବା କନ୍ୟା ଯାହା ହେବ ସେ ତାହାଙ୍କୁ ଶ୍ରୀଜଗନ୍ନାଥଙ୍କ ସେବାରେ ସମର୍ପଣ କରିଦେବେ ବୋଲି ମହାପ୍ରଭୁ ବ୍ରହ୍ମରାଶିଙ୍କୁ ଜଣାଇଲେ । ଏହାର କିଛିଦିନ ପରେ ତାହାଙ୍କର କନ୍ୟାଟିଏ ଜାତ ହେଲା । କନ୍ୟାଟି ଯୁବତୀ ହୋଇଯିବା ପରେ ସେହି ଦକ୍ଷିଣି ବ୍ରାହ୍ମଣ କନ୍ୟାକୁ ଜଗନ୍ନାଥଙ୍କୁ ସମର୍ପଣ କରି ଦେଲେ । ମହାପ୍ରଭୁ ଶ୍ରୀଜଗନ୍ନାଥ ସ୍ୱପ୍ନରେ ବ୍ରାହ୍ମଣକୁ ଆଜ୍ଞା ଦେଲେ, ''ତୋ କନ୍ୟାକୁ ଦାସୀ ରୂପେ ଆମେ ଅଙ୍ଗୀକାର କଲୁ । ହେଲେ ଆମର ଜଣେ ପରମପ୍ରିୟ ଉଦାସୀ ଦାସ ବଟବୃକ୍ଷ ମୂଳରେ ବସିଛି । ତା'ର ନାମ ଜୟଦେବ । ତୁ ତୋ' କନ୍ୟାରତ୍ନକୁ ଜୟଦେବକୁ ଦାନ କର ।''

ଦକ୍ଷିଣି ବିପ୍ର ମହାପ୍ରଭୁଙ୍କର ଆଦେଶ ପାଇବା ମାତ୍ରେ ପ୍ରସନ୍ନ ହୋଇଗଲେ । ସେ କନ୍ୟାକୁ ଧରି ଜୟଦେବଙ୍କ ପାଖକୁ ଗଲେ । ଆଉ ଗତ ରାତିରେ ପାଇଥିବା ପ୍ରଭୁଙ୍କ ଆଜ୍ଞା ଜଣାଇଲେ । ଜୟଦେବ ଏହା ଶ୍ରବଣ କରିବା ମାତ୍ରେ ଚମକି ପଡ଼ିଲେ । ସେ କହିଲେ, ''ମହାଶୟ, ପ୍ରଭୁଙ୍କ ଏପରି ଆଜ୍ଞା ପାଳନ କରିବାକୁ ମୋର ବଳ ନାହିଁ ।'' ଏହାଶୁଣି ଦକ୍ଷିଣି ବୃଦ୍ଧ ବିପ୍ର କହିଲେ, ''ଏହା ପ୍ରଭୁଙ୍କ ଆଜ୍ଞା । ଏହାକୁ ଅବଜ୍ଞା କାହିଁକି କରୁଛ !''

ଜୟଦେବ କହିଲେ, ''ନାଇଁ ଆଜ୍ଞା, ମୁଁ ପାରିବି ନାହିଁ । ତୁମେ ଆଉ ଅଧିକ କଟାଳ କର ନାହିଁ । ତୁମେ ଯଦି ମୋତେ ବାଧ କରିବ ତେବେ ମୁଁ ଶ୍ରୀକ୍ଷେତ୍ର ଛାଡ଼ି ପଳାଇଯିବି ସିନା, ତୁମ କଥା ରଖିପାରିବି ନାହିଁ ।'' ଏହାଶୁଣି ସେହି ବୃଦ୍ଧ ବିପ୍ର ଚିଡ଼ିଗଲେ । ସେ ତାଙ୍କ ଯୁବତୀ କନ୍ୟାକୁ କହିଲେ, ''ଆଲୋ ପଦ୍ମାବତି ! ଇଏ ତୋର ବର । ପ୍ରଭୁ କହିଛନ୍ତି, ତୁ ଏହାକୁ ଆଦର କରି ଏହିଠାରେ ରହ''- ଏପରି କନ୍ୟାକୁ କହି ସେ ତାଙ୍କ ଦେଶକୁ ଚାଲିଗଲେ ।

ସାଧୁ ଜୟଦେବଙ୍କ ପାଖରେ କନ୍ୟା ପଦ୍ମାବତୀ ମୌନରେ ବସି ରହିଲା । ପଦ୍ମାବତୀ ଅତି ଗୁଣବତୀ ଓ ପଦ୍ମିନୀ ଜାତିର ଜଣେ ପ୍ରଭୁଭକ୍ତା ନାରୀ ଥିଲେ । ଜୟଦେବ ଯେତେ ପ୍ରକାର ଭାବରେ ତାକୁ ବୁଝାଇ ବିଦା କଲେ, ସେ କିଛି ନ ଶୁଣି କେବଳ କହିଲେ, ''ପିତା ମୋତେ ତୁମ ପାଖରେ ସମର୍ପଣ କରିଯାଇଛନ୍ତି । ମୋର ଗତ୍ୟନ୍ତର ନାହିଁ । ତୁମେ ହେଉଛ ମୋର ପ୍ରାଣବଲ୍ଲଭ । ମହାପ୍ରଭୁ ମଧ ଏ କଥା କହିଛନ୍ତି । ଏ ଦେହ ଓ ପ୍ରାଣର ଅଧିକାରୀ ତୁମେ । ମୋତେ ଗୋଡ଼ରେ ଠେଲି ପେଲି ଦେଲେ ମୁଁ ପୁଣି ମୁଣ୍ଡ ପୋତି ପୋତି ତୁମ ପାଖରେ ନିଶ୍ଚେ ପଶିବି ।''

ଏ କଥା ଶୁଣି ଜୟଦେବ ମନେ ମନେ ଭାବିଲେ, 'ଏହି ରୂପସୀ ମୋର ସଙ୍ଗିନୀ ରୂପେ ମୋର ମୋହପାଶ ହେଲା । ଯାହା ଜଗନ୍ନାଥଙ୍କର ଇଚ୍ଛା । ମୁଁ ବା କିଏ ଯେ କ'ଣ କରିପାରନ୍ତି ?' ଏପରି ସ୍ଥିର କରି ପଦ୍ମାଙ୍କୁ ସ୍ୱୀକାର କଲେ । ସେ ସେହିଠାରେ ଏକ କୁଟୀର ନିର୍ମାଣ କଲେ । ଶ୍ରୀରାଧାମାଧବଙ୍କୁ ଆଣି ସ୍ଥାପନା କଲେ, ଆଉ ତାଙ୍କର ପାଦ ସେବାର ଭାର ପଦ୍ମାଙ୍କୁ ଅର୍ପଣ କଲେ । ଏହି ପଦ୍ମାବତୀ ମଧ ଅନେକ ଅଲୌକିକ ଗୁଣର ଅଧିକାରିଣୀ ହୋଇଥିଲେ ।

**ମାଧବ ପଦ୍ମାଙ୍କ ହାତରନ୍ଧା ଖାଇଲେ :**

ଜୟଦେବ ସାଧୁଙ୍କ ମହିମା ଯେତେ ଲେଖିଲେ ବି ସରିବ ନାହିଁ । ଭଗବାନ ବି କେଡ଼େ କଉତୁକିଆ । ଦିନେ ମାଧବଙ୍କର ପଦ୍ମାବତୀଙ୍କ ହାତ ରାନ୍ଧଣା ଖାଇବାକୁ ମନହେଲା । ସେ ଦିନ ଜୟଦେବ ଦୂର ଗାଁକୁ ଯାଇଥିଲେ । ମାଧବ କପଟରେ ଜୟଦେବଙ୍କ ରୂପ ଧରି ଘରେ ପହଞ୍ଚିଗଲେ । ଆଉ ପଦ୍ମାବତୀଙ୍କ ହାତରନ୍ଧା ରୋଷେଇ ଭୋଜନ କରି ପରମ ତୃପ୍ତ ହେଲେ । ଜୟଦେବ ଆସିବା ବେଳକୁ ସେ ଘରୁ ପଳାଇଥିଲେ । ଜୟଦେବଙ୍କ ଭଳି ସାଧୁ ଆଉ ପଦ୍ମାବତୀଙ୍କ ଭଳି ସାଧ୍ୱୀଙ୍କ ସହିତ ମାଧବ ଏହିପରି ନାନା କୌତୁକ କରୁଥିଲେ ।

**ମାଳିନୀ ଓ କହ୍ନେଇ :**

ଥରେ ବନମାଳୀପୁର ଗ୍ରାମର ଚାଷୀ ଝିଅ ଗୀତଗୋବିନ୍ଦ ଗାଇ ଗାଇ ଅତି ଉଲ୍ଲାସରେ ତା'ର ବାଇଗଣ କିଆରିରେ ପଶି ବାଇଗଣ ତୋଳୁଥିଲା । ଏହି ଗୀତଗୋବିନ୍ଦ ଶୁଣି ଶୁଣି କହ୍ନେଇ ତା' ପଛେ ପଛେ ନାଚି ନାଚି ଚାଲିଥିଲେ । ତାଙ୍କ ପାଦ ଖାଲଖମାଣ, କଣ୍ଟାଝଟାରେ ପଡୁଥିଲେ ବି ସେ ଅତିଶୟ ପ୍ରେମରେ ବାଳିକାର ପଛେ ପଛେ ବଂଶୀ ବଜାଇ ବଜାଇ ଚାଲିଥିଲେ । ବାଇଗଣ ଗଛର କଣ୍ଟା ଲାଗି କହ୍ନେଇଙ୍କର ପୀତାମ୍ବର ବସ୍ତ୍ର ଓ ଉତ୍ତରୀୟ ଚିରି ଯାଇଥିଲା । ଜଗନ୍ନାଥେ ତ କହ୍ନେଇଙ୍କ ରୂପରେ ଯାଇଥିଲେ । ସମୟ ହୋଇଯିବାରୁ ସେ ଶ୍ରୀମନ୍ଦିରକୁ ଫେରି ଆସିଲେ । ପଣ୍ଡାମାନେ ସେତେବେଳେ ଜଗନ୍ନାଥଙ୍କ ଓଢ଼ଣି ଉତ୍ତରୀୟ ଚିରିଥିବା, ବାଇଗଣ କଣ୍ଟା ଓ ପତ୍ର ଲାଗିଥିବା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ।

ପ୍ରଭୁଙ୍କ ବସ୍ତ୍ରରେ ଏ ସବୁ କୁଆଡୁ ଆସିଲା ? ପଣ୍ଡା ପଢ଼ିଆରୀମାନେ ଭୟରେ ଥରି ଥରି ରାଜାଙ୍କୁ ଏହା ଜଣାଇଲେ । ମହାରାଜ ଏ ଖବର ପାଇ ପ୍ରଭୁଙ୍କ ପାଖକୁ ଆସି ପ୍ରତ୍ୟକ୍ଷରେ ସବୁ ଦେଖିଲେ । ସେ ମହାପ୍ରଭୁ ଜଗନ୍ନାଥଙ୍କୁ ଅତି ଭକ୍ତିରେ ସ୍ତୁତି କରିବାରେ ଲାଗିଲେ, ''ଆହେ ଜଗତ ଠାକୁର, ଏହି ବୈକୁଣ୍ଠପୁର ଛାଡ଼ି କାହିଁକି ବଣକୁ ଯାଇଥିଲ । ଆପଣଙ୍କ ଶ୍ରୀଅଙ୍ଗରେ କ୍ଷତ, ବସ୍ତ୍ର ଚିରିବା ଦୃଶ୍ୟ ଅସହ୍ୟ ହେଉଛି । ମୋ' ଭଳି ଭୃତ୍ୟ ଥାଉ ଥାଉ ଜଗତପ୍ରାଣଙ୍କର କେଉଁ ଦ୍ରବ୍ୟର ଆବଶ୍ୟକ ପଡ଼ିଲା ଯେ ନିଜେ ସେଥିପାଇଁ ବିଜେ ହୋଇଗଲେ । ମୋତେ ତ ଆଜ୍ଞା ଦେଇଥିଲେ ଇନ୍ଦ୍ର ବ୍ରହ୍ମା ଚନ୍ଦ୍ରଙ୍କୁ ଆପଣଙ୍କ ସେବାରେ ଖଟାଇବା ପାଇଁ ବାନ୍ଧିଆଣି ଥାଆନ୍ତି ! ଆପଣ ଖାଲି ପାଦରେ ଚାଲି ଚାଲି ଯାଇଥିଲେ । ଆହା, ଆପଣଙ୍କ ସୁକୋମଳ ପାଦରେ ସତେ କେତେ କଣ୍ଟା ନ ଫୁଟିଛି !'' ରାଜା ଏହିପରି ବିକଳରେ କାନ୍ଦି କାନ୍ଦି ପ୍ରଭୁଙ୍କ ପାଦ ତଳେ ଲୋଟିଗଲେ ।

ଏହି ସମୟରେ ମନ୍ଦିର ଗହ୍ୱରରେ ଶୂନ୍ୟ ବାଣୀ ପ୍ରତିଧ୍ୱନିତ ହେଲା, ''ହେ ରାଜା ଶୁଣ ! ମାଳିନୀ ନାମରେ ଚଷା ଝିଅଟିଏ ବଡ଼ ସୁନ୍ଦର ଭାବ ଓ ତାଳରେ ଶ୍ରୀଗୀତଗୋବିନ୍ଦ ଗାନ କରୁଥିଲା । ସେ ଗୀତ ବୋଲୁଥାଏ ଓ ବାଇଗଣ ତୋଳୁଥାଏ । ମୁଁ ତା' ଗୀତଗୋବିନ୍ଦ ଶୁଣିବାକୁ ତା' ପଛେ ପଛେ ଯାଇ ଏପରି ଦଶା ହୋଇଛି ।''

ରାଜା ଏପରି ମହାପ୍ରଭୁଙ୍କ ବାକ୍ୟ ଶୁଣି ସହସା ମାଳିନୀ କନ୍ୟାକୁ ଆଣିବା ପାଇଁ ଶିବିକା ପଠାଇଦେଲେ । ମାଳିନୀ ଆସିବାମାତ୍ରେ ଜଗମୋହନରେ ଗୀତଗୋବିନ୍ଦ ପଢ଼ିବାକୁ ମହାରାଜା ତାକୁ କହିଲେ । ତାହାଠାରୁ ଗୀତଗୋବିନ୍ଦ ଶୁଣି ମହାପ୍ରଭୁ ମହାନନ୍ଦ ଲଭିଲେ । ମହାରାଜା ସେହି ବାଳିକା ପାଇଁ ଶ୍ରୀକ୍ଷେତ୍ରରେ ଗୃହ, ଖଞ୍ଜା, ଭୂମି, ଖାଇ ଇତ୍ୟାଦି ଖଞ୍ଜି ଦେଲେ । ସେହି ଦିନଠାରୁ ପ୍ରତ୍ୟହ ପ୍ରଭୁଙ୍କ ସାନ୍ନିଧରେ ଗୀତଗୋବିନ୍ଦ ଗାଇ ଶୁଣାଇବାକୁ ସନନ୍ଦ କରିଦେଲେ । ଆଜି ପର୍ଯ୍ୟନ୍ତ ତା'ର ବଂଶଧରମାନେ ଶ୍ରୀମନ୍ଦିରରେ ଗୀତଗୋବିନ୍ଦ ଗାଉଛନ୍ତି ।

**ଯବନର ଭକ୍ତିଭାବ :**

ମହାରାଜା ସେହି ଦିନଠାରୁ ସମଗ୍ର ରାଜ୍ୟରେ ଆଦେଶ ଘୋଷଣା କରିଦେଲେ କେହି ଯେପରି କୁତ୍ସିତ ସ୍ଥାନରେ, ଗମନାଗମନ ବେଳେ ବା କୌଣସି ସ୍ଥାନରେ ବସିରହି ଗୀତଗୋବିନ୍ଦ ଗାଇବେ ନାହିଁ ।

ଏହିପରି କେତେ ଦିନ ଗଲା । ଦିନେ ଜଣେ ଯବନ ଏହି ଘୋଷଣା ଶୁଣିଲା । ସେ ଏହାକୁ ବେଖାତିର କରି ଘୋଡ଼ାରେ ବସି ଗୀତଗୋବିନ୍ଦ ବୋଲି ବୋଲି ଚାଲିଲା । କିଛି ବାଟ ଯିବାପରେ ସେ ତା' ପଛପଟେ ବଂଶୀର ସ୍ୱର ଶୁଣିବାକୁ ପାଇଲା । ସତେ ଯେପରି କେହି ଜଣେ ତା' ପଛରେ ବଂଶୀ ବଜାଉଛି । ସେ ପଛକୁ ବୁଲି ଚାହିଁଲା । ଦେଖିଲା ତା' ପଛରେ କେହି ନାହିଁ । ତେଣୁ ଏହାକୁ ମିଥ୍ୟା ପ୍ରଚାର ବୋଲି ମନେ ମନେ ଭାବି ମୁହଁ ବୁଲାଇ ଦେବା ମାତ୍ରେ ଦେଖିଲା ସମ୍ମୁଖରେ ଭାବଗ୍ରାହୀ ଠିଆ ହୋଇଛନ୍ତି । ଭାବଗ୍ରାହୀଙ୍କର ଅତୀବ ରମଣୀୟ ଶ୍ୟାମଳ ସୁନ୍ଦର ରୂପ ଦେଖି ଯବନର ଅଜାଣତରେ ଅଶ୍ରୁ ଝରିବାରେ ଲାଗିଲା । ସେ ଜାଣିଲା ହରିଙ୍କର ପରାପର କେହି ନାହିଁ କି ତାଙ୍କ ବିଚାରରେ ଯବନ, ଚଣ୍ଡାଳ ଆଦି କେହି ନାହାନ୍ତି । ସେହି ଦେବରାୟ ହେଉଛନ୍ତି ଭକ୍ତବତ୍ସଳ ଶ୍ରୀଜଗନ୍ନାଥ । ତାଙ୍କୁ ଯିଏ ଭଜେ, ସେ ପାଏ ।

**କୁଷ୍ଠରୋଗରୁ ମୁକ୍ତ :**

ଭଗବାନ ପ୍ରକୃତରେ ହେଉଛନ୍ତି ଅତ୍ୟଧିକ ଭଜନପ୍ରିୟ । ଭଜନ-କୀର୍ତ୍ତନ ବୋଲିବାଦ୍ୱାରା ଭାବର ଉଦୟ ହୁଏ । ଆଉ ଭଗବାନ ହେଉଛନ୍ତି

ଭାବ ବିନୋଦିଆ । ଜାତି ଫାତି, ଧନୀ ଗରିବ, ରୋଗୀ ଭୋଗୀ ସେ କିଛି ଦେଖନ୍ତି ନାହିଁ । ମନ୍ତ୍ର, ଧ୍ୟାନ, ଜପ, ତପ, ଯଜ୍ଞ, ଦାନ ଯେତେ କଲେ ବି ଭଗବାନଙ୍କୁ ସହଜରେ ପାଇ ହୁଏ ନାହିଁ । ତାଙ୍କୁ ତାଙ୍କର ପ୍ରିୟ ଭଜନ ଶୁଣିବାକୁ ଯେତେ ଭଲ ଲାଗେ ତା' ତୁଳନାରେ ଅନ୍ୟ କୌଣସି ଥିରେ ସେ ପ୍ରସନ୍ନ ହୁଅନ୍ତି ନାହିଁ ।

ଢେଙ୍କାନାଳ ଜିଲ୍ଲାରେ କୁଆଳ ନାମରେ ଗୋଟିଏ ଗ୍ରାମ ଅଛି । ସେହି ଗ୍ରାମରେ ଗୋଟିଏ ଶିବ ମନ୍ଦିର ଅଛି । କୁଆଳ ଗ୍ରାମରେ ଜଣେ କୁଷ୍ଠରୋଗୀ ରହୁଥାଏ । ତାକୁ ଗ୍ରାମବାସୀମାନେ ଗାଁ ବାହାରେ ରହିବାକୁ କହିଲେ । ସେ ଗାଁ ମୁଣ୍ଡରେ, ଗୋଟିଏ ନିମଗଛ ମୂଳରେ, କୁଡ଼ିଆଟିଏ କରି ରହିଥାଏ ।

ସେହି କୁଷ୍ଠରୋଗୀ ଜଣକ ବଡ଼ ଦୁଃଖୀ ଲୋକ ଥିଲା । କିନ୍ତୁ ସେ ଅନ୍ୟମାନଙ୍କଠାରୁ ଶୁଣିଥିଲା ଯେ, ଭଗବାନ ଶ୍ରୀ ଜୟଦେବଙ୍କ ରଚିତ ଗୀତଗୋବିନ୍ଦ ଶୁଣିବାକୁ ଭାରି ଭଲ ପାଆନ୍ତି । ଭଗବାନଙ୍କୁ ଗୀତଗୋବିନ୍ଦ ଶୁଣାଇଲେ ସେ ପ୍ରସନ୍ନ ହେବେ ଓ ତା' ରୋଗ ଭଲ କରିଦେବେ - ଏ କଥା ଜାଣିଲେ କ'ଣ ହେବ, ସେ ତ ବଡ଼ରୋଗୀ, ଦିନବେଳେ ମନ୍ଦିରକୁ ଲୋକମାନେ ଯା'ଆସ କରନ୍ତି, ସେ ଯାଇପାରିବ ନାହିଁ । ତେଣୁ ସେ ପ୍ରତିଦିନ ରାତିରେ ସେହି ଶିବ ମନ୍ଦିର ପଛପଟକୁ ଯାଇ, ମନ୍ଦିର ଆଡ଼କୁ ଚାହିଁ ଗୀତଗୋବିନ୍ଦ ଗାଇବାରେ ଲାଗିଲା । ତା' ଭାଇ ସବୁଦିନ ରାତିରେ ତାକୁ ନେଇ ଶିବ ମନ୍ଦିର ପଛପାଖରେ ଛାଡ଼ି ଦେଇ ଆସେ । ପୁଣି ଅଧରାତିରେ ନେଇ ଆସେ । କୁଷ୍ଠରୋଗୀ ସେ, ମନ୍ଦିରର ସିଂହଦ୍ୱାର ତା' ପାଇଁ ମନା ।

ଲୋକଟିକୁ କୁଷ୍ଠରୋଗ ହୋଇଥିଲେ କ'ଣ ହେବ, ତା' କଣ୍ଠ ସ୍ୱର ଥିଲା ଉତ୍ତମ ଓ ସେ ସୁନ୍ଦର ଭଜନ ଗାଇ ପାରୁଥିଲା । ଗୀତଗୋବିନ୍ଦକୁ ମୁଖସ୍ଥ କରି, ସେ ସବୁଦିନ ରାତିର ନିରୋଳାରେ ଶିବ ମନ୍ଦିର ପଛପଟେ ବସି ଗାଇବାରେ ଲାଗିଥାଏ । ଅନ୍ଧାର ରାତି, ଜଙ୍ଗଲ ଘେରା ପରିବେଶ, ନିର୍ଜନ ସ୍ଥାନ, ଜଙ୍ଗଲରେ ପଶୁ, ସାପ, ବିଛା ଥାଆନ୍ତି । ସେମାନଙ୍କପ୍ରତି ତା'ର କୌଣସି ପ୍ରକାର ଭୟ ନଥାଏ । ସେ ଜାଣିଥିଲା ଯେ, ଗୀତଗୋବିନ୍ଦ ଗାନ କରୁଥିବା ଲୋକର କେହି କେବେ କିଛି କ୍ଷତି କରିପାରନ୍ତି ନାହିଁ । ଓଡ଼ିଶାର ମହାନ୍ କବି ଜୟଦେବଙ୍କ ବିଷୟରେ ସେ ଅନେକ ଗପ ଶୁଣିଥାଏ । ଏହିପରି ସେ ନିର୍ଭୀକ ଭାବେ ଭଗବାନ ଶିବଶଙ୍କରଙ୍କୁ ମନ୍ଦିରର ପଛପଟରୁ ସୁନ୍ଦର ସ୍ୱରରେ ଗୀତଗୋବିନ୍ଦ ଶୁଣାଇବାରେ ଲାଗିଥାଏ । କେତେଦିନ ଧରି ସେ ଏଭଳି ନିଷ୍ଠାର ସହିତ ଆକୁଳ ହୃଦୟରେ ଗାଇବାରେ ଲାଗିଥାଏ । ଦିନେ ରାତିରେ ହଠାତ୍ ମନ୍ଦିର ଭିତରୁ ଶୁଣାଗଲା- 'ଆରେ ସେ କିଏ କେଉଁଠି ମୋର ପ୍ରିୟ ଭଜନ ଗୀତଗୋବିନ୍ଦ ବୋଲୁଛି । ମୋତେ ଭାରି ଭଲ ଲାଗୁଛି । ମୋ' ସାମ୍ନାକୁ ଆସି ବୋଲ । ମୁଁ ଶୁଣିବି ।'

ଏହା ଶୁଣିବା ସଙ୍ଗେ ସଙ୍ଗେ କୁଷ୍ଠରୋଗୀ ଜଣକ କହିଲା, ''କିଏ ସେ, ସେ ଗୀତଗୋବିନ୍ଦ ଶୁଣିବାକୁ କହୁଛନ୍ତି, ସେ ମୋ' ସାମ୍ନାକୁ ଆସନ୍ତୁ, ମୁଁ ଖଣ୍ଡିଆ ରୋଗୀ, ମୋର ପାଦ ନାହିଁ, ମୁଁ ଚାଲି ଚାଲି ଯାଇପାରିବି ନାହିଁ ।''

ଏତିକି କଥା କହିଛି କି ନାହିଁ ହଠାତ୍ ଏକ ଭୀଷଣ ଗର୍ଜନ ଶୁଣାଗଲା । ଆଉ ତା' ସଙ୍ଗେ ସଙ୍ଗେ ମନ୍ଦିର ଖୁଣ୍ଟ ମୂଳଦୁଆ ସହିତ ଘନ ଘର୍ଘର ନାଦ କରି ଅର୍ଦ୍ଧବୃତ୍ତାକାରରେ ବୁଲିଗଲା । କୁଷ୍ଠରୋଗୀ ଯେଉଁ ଆଡ଼େ ମୁହଁ କରିଥିଲା ସିଆଡ଼େ ମନ୍ଦିରର ସିଂହଦ୍ୱାର ଛିଡ଼ା ହୋଇଗଲା । କବାଟ ମେଲା ଓ କୁଷ୍ଠରୋଗୀ ଦେଖିପାରୁଥିବା ଭଳି ମନ୍ଦିର ଗମ୍ଭୀରା ଭିତରେ ଥିବା ଲିଙ୍ଗଙ୍କ ଉପରେ ବିଜୁଳି ଚମକିଲା ଭଳି ତେଜିୟାନ ଜ୍ୟୋତି ଦେଖାଗଲା । ଆଉ ଠିକ୍ ସେହି ସମୟରେ କୁଷ୍ଠରୋଗୀର ରୋଗ ସମ୍ପୂର୍ଣ୍ଣ ଭଲ ହୋଇଗଲା । ସେ ଦଣ୍ଡବତ ପ୍ରମାଣେ ତଳେ ସାଷ୍ଟାଙ୍ଗ ପଡ଼ି ଗୀତଗୋବିନ୍ଦ ଗାନ କରିବାରେ ଲାଗିଥାଏ । ଏପରି ପ୍ରଚଣ୍ଡ ଗର୍ଜନ ଓ ମନ୍ଦିର ଚକଡ଼ା ଘୁରୁଥିବା ସମୟରେ ଯେଉଁ ପ୍ରଚଣ୍ଡ ଘର୍ଘର ନାଦ ହୋଇଥିଲା, ସେଥିରେ କୁଆଳ ଗ୍ରାମ ଦୋହଲି ଯାଇଥିଲା । ଗ୍ରାମବାସୀମାନେ ଶବ୍ଦ ଆସୁଥିବା ମନ୍ଦିର ଆଡ଼କୁ ଦୌଡ଼ିଲେ । ସେମାନେ ଦେଖିଲେ, ମନ୍ଦିରଟି ବୁଲିଯାଇଛି । କୁଷ୍ଠରୋଗୀ ଜଣକ ସାଷ୍ଟାଙ୍ଗ ପ୍ରଣାମ କରି ଗୀତଗୋବିନ୍ଦ ଗାଇବାରେ ଲାଗିଛି । ସେ ସମ୍ପୂର୍ଣ୍ଣ ସୁସ୍ଥ ହୋଇଯାଇଛି ।

ଗ୍ରାମବାସୀଗଣ ସେତେବେଳେ ଆନନ୍ଦରେ ଗ୍ରାମଦେବତା ହରହର ମହାଦେବଙ୍କ ଜୟ ଜୟକାର କରିବା ସହିତ ଜୟ ଗୀତଗୋବିନ୍ଦ, ଜୟ ଜୟଦେବ, ଜୟ ଜୟ ଜଗନ୍ନାଥ ଉଚ୍ଚ ସ୍ୱରରେ ଜୟ ଜୟକାର କରିବାରେ ଲାଗିଲେ । ଗୀତଗୋବିନ୍ଦ ଭଜନର ପ୍ରଭାବରେ ଭଗବାନ ତ ପ୍ରସନ୍ନ ହେଲେ, ଜଡ଼ ପଥର ମଧ୍ୟ ଜୀବନ୍ତ ହୋଇ ଘୁରି ଯାଇଥିଲା ।

ଏହିପରି ଅନେକ କଥା ଭକ୍ତକବି ଜୟଦେବଙ୍କ ଅଲୌକିକ ମହିମାକୁ ବର୍ଣ୍ଣାଢ଼୍ୟ କରିଛି ।

ସୌଜନ୍ୟ : ସୂଚନା ଓ ଲୋକ ସଂପର୍କ ବିଭାଗ



# ଆମ କବି ଜୟଦେବ

ଗୁରୁକଲ୍ୟାଣ ମହାପାତ୍ର

ଯଦି ଆମ କବି ଜୟଦେବଙ୍କ ସଂପର୍କରେ ପଚରାଯାଏ, ତେବେ ଅନେକ ତାଙ୍କର ନାମ ହୁଏତ ଶୁଣିଥିବେ । କିନ୍ତୁ ଭଲ ଭାବରେ ଚିହ୍ନି ନଥିବେ ନିଶ୍ଚୟ । ତଥାପି ଜୟଦେବ ବଞ୍ଚି ରହିଛନ୍ତି ରାସ୍ତାଘାଟରେ, ମିଟିଙ୍ଗ ହଲ୍‌ରେ, ନଚେତ୍ ସଭାମଞ୍ଚ, ଶୋଭାଯାତ୍ରା ବା କୀର୍ତ୍ତନ ମଣ୍ଡଳୀରେ । ସଂସ୍କୃତ ଭାଷାରେ କବି ଜୟଦେବଙ୍କ 'ଗୀତଗୋବିନ୍ଦ' କାବ୍ୟ ଏକଦା ରସାମୋଦୀ ଶିକ୍ଷିତ ପାଠକ ଓ ପାଠିକାକୁ ହୁଏତ ଆକୃଷ୍ଟ କରୁଥିଲା । ସାଧାରଣ ଲୋକେ ତାଙ୍କୁ ଚିହ୍ନୁ ଥିଲେ ଦଶାବତାର କୀର୍ତ୍ତନରୁ । ଗାଁଗହଳରେ ଦଶାବତାର ନୃତ୍ୟ କୀର୍ତ୍ତନ ପ୍ରତ୍ୟହ ମନ୍ଦିରମାନଙ୍କରେ ବୋଲା ଯାଉଥିଲା । ଏବେବି ସେହି କୀର୍ତ୍ତନର ସ୍ୱର ଅନେକ ଗାଁରେ ଶୁଣିବାକୁ ମିଳିଥାଏ । ସହରମାନଙ୍କରେ ଓଡ଼ିଶୀ ନୃତ୍ୟାଭିନୟ ମଧ୍ୟରେ ଦଶାବତାର ନୃତ୍ୟ ବେଶ୍ ମନୋମୁଗ୍ଧକର । ତଥାପି କବି ଜୟଦେବଙ୍କ ପରିଚୟ ରହିଯାଇଛି ଅଧିକାଂଶଙ୍କ ଅଲକ୍ଷ୍ୟରେ । ଅନେକ ତ ଜାଣନ୍ତି ନାହିଁ ଜୟଦେବ ବା ତାଙ୍କ କୃତିତ୍ୱ ସଂପର୍କରେ ।

ଜୟଦେବ ଥିଲେ ଦ୍ୱାଦଶ ଶତାବ୍ଦୀରେ ପ୍ରସିଦ୍ଧ କବି । ସଂସ୍କୃତ ଭାଷାରେ ତାଙ୍କର କାନ୍ତ କୋମଳ ପଦାବଳୀ ହିଁ ତାଙ୍କୁ ସେ ସମୟରେ ପ୍ରସିଦ୍ଧ କରି ପାରିଥିଲା । ସେତେବେଳେ ତାଙ୍କୁ 'କାନ୍ତକବି' ମଧ୍ୟ କୁହାଯାଉଥିଲା । ଅବଶ୍ୟ ଆଧୁନିକ କାଳରେ ସେ କେବଳ କବି ଜୟଦେବ ଭାବେ ଶିକ୍ଷିତ ସାହିତ୍ୟିକ ବା କଳାକାର ମହଲରେ ପରିଚିତ ହେଲେ । ବରଂ ଓଡ଼ିଆ ଭାଷା ଓ ସାହିତ୍ୟରେ କାନ୍ତ କୋମଳ ପଦାବଳୀ ପାଇଁ ଆଧୁନିକ ଯୁଗରେ ଲକ୍ଷ୍ମୀକାନ୍ତ ମହାପାତ୍ର ହିଁ 'କାନ୍ତକବି' ଭାବେ ପରିଚିତ ହେଲେ । ସେହିପରି ବଙ୍ଗଳା ଭାଷା ଓ ସାହିତ୍ୟରେ ରଜନୀକାନ୍ତ ସେନ୍ ମଧ୍ୟ 'କାନ୍ତକବି' ଭାବେ ପରିଚିତ ଥିଲେ ।

କବି ଜୟଦେବ ଓଡ଼ିଶାର ହୋଇଥିଲେ ହେଁ ସେ ପଶ୍ଚିମବଙ୍ଗ ବା ତତ୍କାଳୀନ ବଙ୍ଗଦେଶର ବୋଲି ଅନେକ ଦିନ ଧରି ବିବାଦ ଚାଲିଥିଲା । ସେ ବିବାଦର ଜୁଆରରେ ଏବେ ଭଟ୍ଟା ପଡ଼ିଯାଇଛି ।

ଓଡ଼ିଶାର ପୁରୀ ଜିଲ୍ଲାରେ (ଏବର ଖୋର୍ଦ୍ଧା ଜିଲ୍ଲା ଅନ୍ତର୍ଗତ) କେନ୍ଦୁବିଲ୍ୱ ବା କେନ୍ଦୁଲି ତାଙ୍କର ପବିତ୍ର ଜନ୍ମସ୍ଥାନ ବୋଲି ପ୍ରତିପାଦିତ ହେବା ପରେ ଅବଶ୍ୟ ଏପରି ବିବାଦର ଅବସାନ ଘଟିଛି ବୋଲି କୁହାଯାଇପାରେ । କାରଣ ବଙ୍ଗଳା ଓ ଓଡ଼ିଆ ଭାଷା ମଧ୍ୟରେ ପୂର୍ବବତ ଆଉ ତିକ୍ତତା ଥିବାପରି ମନେ ହେଉନାହିଁ । ପ୍ରସିଦ୍ଧ ଭାଷାବିତ୍ ସ୍ୱର୍ଗୀୟ ସୁନୀତି ଚାଟାର୍ଜୀ ମଧ୍ୟ ଜୟଦେବ ଓଡ଼ିଶାର ବୋଲି ମାନିଛନ୍ତି ।

ଏବର କମ୍ପ୍ୟୁଟର ଓ ଇଣ୍ଟରନେଟ୍ ଯୁଗରେ ଯେତେବେଳେ ଆମେମାନେ ଆପଣାର ମାତୃଭାଷା ଓଡ଼ିଆକୁ ଭୁଲିଯାଇ ଇଂରାଜୀ ବା ହିନ୍ଦୀମିଶା ଓଡ଼ିଆରେ କଥାବାର୍ତ୍ତା ହେଉଛୁଁ ବା ଲେଖାଲେଖି କରୁଛୁଁ, ସେତେବେଳେ କବି ଜୟଦେବ କିଏ ବୋଲି ପଚାରିବାରେ କୌଣସି ବୈଚିତ୍ର୍ୟ ନାହିଁ । କିନ୍ତୁ କବି ଜୟଦେବଙ୍କ 'ଗୀତଗୋବିନ୍ଦ' ପରବର୍ତ୍ତୀ କାଳରେ ସାହିତ୍ୟ ସାଧକମାନଙ୍କୁ ଯେ ଗଭୀରଭାବେ ଅନୁପ୍ରାଣିତ କରିଛି, ଏଥିରେ ସନ୍ଦେହ ନାହିଁ ।

'ଗୀତଗୋବିନ୍ଦ'ର ପ୍ରଭାବ ତତ୍କାଳୀନ ପୁରୀ ଗଜପତି ପୁରୁଷୋତ୍ତମ ଦେବଙ୍କ 'ଅଭିନବ ଗୀତଗୋବିନ୍ଦ' ଉପରେ ତ ପଡ଼ିଥିଲା । ସଂସ୍କୃତ ଭାଷାର ପ୍ରସିଦ୍ଧ କବି ରାୟ ରାମାନନ୍ଦ ପଟ୍ଟନାୟକଙ୍କ ରଚିତ 'ଜଗନ୍ନାଥ ବଲ୍ଲଭ' ନାଟକ ବା କବିଚନ୍ଦ୍ର କମଳଲୋଚନ ଖଡ୍‌ଗରାୟଙ୍କ ରଚିତ 'ବ୍ରଜଯୁବ ବିଳାସ' କାବ୍ୟ ଉପରେ ମଧ୍ୟ ଗୀତଗୋବିନ୍ଦର ପ୍ରଭାବ ଲକ୍ଷଣୀୟ ।

କବି ଜୟଦେବଙ୍କ ଉପରେ ଓଡ଼ିଆ ଓ ଇଂରାଜୀ ଭାଷାରେ ଅନେକ ଲେଖା ପ୍ରକାଶ ପାଇଲାଣି । ଅନେକ ଗ୍ରନ୍ଥ ଲୋକଲୋଚନକୁ ଆସିଲାଣି । ତଥାପି ସାଧାରଣ ଲୋକଙ୍କଠାରୁ ଯେପରି ସେ ଏବେ ଦୂରେଇ ଯାଇଛନ୍ତି । ସେ ଦ୍ୱାଦଶ ଶତାବ୍ଦୀର କବି ସତ, କିନ୍ତୁ ତାଙ୍କର ଫଟୋଚିତ୍ର ସେତେବେଳେ ନଥିଲା । ତେଣୁ କାଳ୍ପନିକ ଫଟୋଚିତ୍ର, ପ୍ରତିଛବି ବା ପ୍ରତିମୂର୍ତ୍ତିରେ କିମ୍ବା ପୋଥିପତ୍ରର ଛବିରେ ତାଙ୍କ ଜୟନ୍ତୀ ସମୟରେ (ଅକ୍ଷୟ ତୃତୀୟା ଦିନ) ତାଙ୍କ ପ୍ରତିମୂର୍ତ୍ତି ବା ଫଟୋଚିତ୍ରରେ ଆମେ ଶ୍ରଦ୍ଧାସୁମନ ଦେଇ ଯେପରି ତାଙ୍କର ଜୟନ୍ତୀ ପାଳନ କରିଥାଉଁ, ତାହା ପ୍ରକୃତରେ ଆନନ୍ଦର କଥା ।

ମୋର ମନେହୁଏ, କାବ୍ୟ ସାଧନାରେ ନିମଜ୍ଜିତ ଥିବାବେଳେ ସମ୍ଭବତଃ ତାଙ୍କୁ କେହି ପଚାରୁ ନଥିଲେ । ମାତ୍ର ସେ ଦେହତ୍ୟାଗ କରିବାର ଏତେ ବର୍ଷ ପରେ ମଧ୍ୟ ତାଙ୍କ ପରିବାରବର୍ଗଙ୍କ ସହଯୋଗ

ଉପରେ ନିର୍ଭର ନକରି ଯେଉଁମାନେ ତାଙ୍କର ଜୟନ୍ତୀ ପାଳନ କରିବା କ୍ଷେତ୍ରରେ (ସେ ସରକାରୀ ହେଉ ବା ବେସରକାରୀ ହେଉ) ଆଗଭର ହୋଇଛନ୍ତି, ସେମାନେ ସମସ୍ତେ ଆମର ଧନ୍ୟବାଦାର୍ହ ।

ଓଡ଼ିଶାର ସଂସ୍କୃତି ହେଉଛି ଜଗନ୍ନାଥ ସଂସ୍କୃତି । ଶ୍ରୀମନ୍ଦିରରେ ଗୀତଗୋବିନ୍ଦ ବୋଲାଯିବା ଓ ମାହାରୀମାନେ ନୃତ୍ୟ କରିବାର ଯେଉଁ ଅନନ୍ୟ ପରମ୍ପରା ଆମର ରହିଥିଲା, ତାହାକୁ ଅକ୍ଷୁର୍ଣ୍ଣ ରଖାଯାଇ ପାରିନାହିଁ । କିନ୍ତୁ ତାହାର ପୁନରୁଦ୍ଧାର ଦିଗରେ ଉଦ୍ୟମ ହେବା ଦରକାର ।

ଗତ ବର୍ଷ ୨୦୦୭ ଅକ୍ଷୟ ତୃତୀୟା ଦିବସରେ କବି ଜୟଦେବଙ୍କ ପବିତ୍ର ଜନ୍ମ ଦିବସରେ ପଣ୍ଡିତ ହାଡ଼ିବନ୍ଧୁ ନାୟକ 'କହେ ଜୟଦେବ କବି' ନାମକ ୧୩୦ ପୃଷ୍ଠା ବିଶିଷ୍ଟ ଏକ ମନୋଜ୍ଞ ପୁସ୍ତକ ରଚନା କରିଛନ୍ତି । ବଡ଼ ବିଚିତ୍ର କଥା ଯେ ପଣ୍ଡିତ ନାୟକଙ୍କ ଜନ୍ମ ମଧ ସେହି କେନ୍ଦୁବିଲ୍ୱ ଗ୍ରାମରେ । ସେ କୌଣସି ଚାକିରି କରି ନାହାନ୍ତି କି ଉଚ୍ଚଶିକ୍ଷା ପ୍ରାପ୍ତ ମଧ ନୁହେଁ । ମାତ୍ର ଜୟଦେବଙ୍କ ଜୀବନୀ ତଥା କୃତିକୁ ସେ ଗଭୀର ଭାବେ ଅଧ୍ୟୟନ କରିବା ପରେ ଜୟଦେବଙ୍କୁ ନାୟକ କରି ଆତ୍ମଜୀବନୀ ଢଙ୍ଗରେ ଏକ ଭିନ୍ନ ଶୈଳୀରେ ସେ ଏ ଯେଉଁ ପୁସ୍ତକ ରଚନା କରିଛନ୍ତି, ତାହା ଯେ ସୁଖପାଠ୍ୟ, ଏଥିରେ ସନ୍ଦେହ ନାହିଁ ।

ଏବେ ତ ପୁସ୍ତକ ପଠନର ସ୍ପୃହା କମି ଆସିଲାଣି । କେବଳ ଆବଶ୍ୟକତା ଦୃଷ୍ଟିରୁ ସମ୍ବାଦ ପଠନର ସ୍ପୃହା କମି ନାହିଁ । ସେଥିପାଇଁ ଓଡ଼ିଆ ଓ ଇଂରାଜୀ ଭାଷାର ସମ୍ବାଦପତ୍ରର ଚାହିଦା ବୃଦ୍ଧି ପାଇଛି । କିନ୍ତୁ ଆମର ଦୁର୍ଭାଗ୍ୟ ଯେ ଅନେକ ସମ୍ବାଦପତ୍ରରେ ଓଡ଼ିଶାର ବରପୁତ୍ରମାନଙ୍କର ଜୟନ୍ତୀ ବା ଶ୍ରାଦ୍ଧ ଉପଲକ୍ଷେ ଲେଖାମାନ ପ୍ରକାଶ ପାଇ ପାରୁନାହିଁ । ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିକୁ କିପରି ରକ୍ଷା କରାଯାଇପାରିବ ଭବିଷ୍ୟତରେ ସେ ବିଷୟରେ ଓଡ଼ିଆମାନେ ସଚେତନ ହୋଇ ଗଭୀର ଭାବେ ଚିନ୍ତା କରିବା ଉଚିତ ।

କ୍ୱା.ନଂ.- ଡି.-୧୦/୫
ୟୁନିଟ୍-୮, ଭୁବନେଶ୍ୱର-୧୨

## ଅନୁଗୋଳରେ ଜୟଦେବ ଜୟନ୍ତୀ

ଜିଲ୍ଲା ସଂସ୍କୃତି ପରିଷଦ ଆନୁକୂଲ୍ୟରେ ଅନୁଗୋଳ ଜିଲ୍ଲା ପ୍ରଶାସନ ଦ୍ୱାରା ସ୍ଥାନୀୟ ଓଡ଼ିଶା ରେନ୍‌ଜର୍ସ୍ କଲେଜ ପରିସରରେ ଜୟଦେବ ଜୟନ୍ତୀ ମହାସମାରୋହରେ ପାଳିତ ହୋଇଥିଲା । ସଂଯୋଜକ ଅଧାପକ ବିରଞ୍ଚି ସାମଲଙ୍କ ଜୟଦେବ କବିତ୍ୱ ଓ କୃତିକୁ ନେଇ ଭାବୋଦ୍ଦୀପକ ସଂଯୋଜନାରେ ମୁଖ୍ୟ ଅତିଥି ରୂପେ ଯୋଗ ଦେଇ ଜିଲ୍ଲାର ଅତିରିକ୍ତ ଜିଲ୍ଲାପାଳ ଶ୍ରୀ ବନ୍ଧୁ ବିଲହୋର ତାଙ୍କ ଅଭିଭାଷଣରେ ଜୟଦେବଙ୍କୁ ଉତ୍କଳୀୟ କବି ରୂପେ ଅଭିହିତ କରିଥିଲେ । ସେ କହିଥିଲେ ଯେ ପୃଥିବୀର ସବୁ ସ୍ଥାନରେ ଜୟଦେବ ଅମର କବି ରୂପେ ସ୍ୱୀକୃତ । ତାଙ୍କର ହୃଦୟଗ୍ରାହ୍ୟ ସୌନ୍ଦର୍ଯ୍ୟ ଓ ଧାର୍ମିକ ଭାବର ମଧୁର ମିଶ୍ରଣ ଅନୁଭୂତିର ତୀବ୍ରତା ଦୃଷ୍ଟିରୁ ତତ୍ତ୍ୱ ଓ ଅଭିବ୍ୟକ୍ତିର ମଧୁମୟ ଲାଳିତ୍ୟ ମାଧମରେ ପାର୍ଥିବ ଚେତନା ଅତିକ୍ରମ କରିବା ଗୀତଗୋବିନ୍ଦର ଲକ୍ଷ୍ୟ । ମୁଖ୍ୟବକ୍ତା ଅଧାପକ ଶାନ୍ତନୁ ସର କିମ୍ବଦନ୍ତୀ ପୁରୁଷ ଜୟଦେବଙ୍କ ଜୀବନୀ ଓ ଚେତନାର ତାତ୍ତ୍ୱିକ ବିଶ୍ଳେଷଣ କରିବା ସହ ରାଧାକୃଷ୍ଣଙ୍କୁ ଘେନି ଶୃଙ୍ଗାର ରସସିକ୍ତ କାବ୍ୟ ପରିବେଷଣରେ ଜୟଦେବ ଯେ ଅନନ୍ୟ ଓ ଅସାଧାରଣ ବୋଲି ପ୍ରତିପାଦିତ କରିଥିଲେ । ଗୀତଗୋବିନ୍ଦର ପ୍ରଚାର ଓ ପ୍ରସାର ଦିଗରେ ସମସ୍ତ ଉତ୍କଳୀୟ ଉଦ୍‌ବୁଦ୍ଧ ହେବାର ଲକ୍ଷ୍ୟ ନେଇ ବଞ୍ଚିବା ଉଚିତ୍ ବୋଲି ଧନ୍ୟବାଦ ଅର୍ପଣ ଅବସରରେ ମତବ୍ୟକ୍ତ କରିଥିଲେ । ଜିଲ୍ଲା ସଂସ୍କୃତି ପରିଷଦର ସଂପାଦକ ଶ୍ରୀ ବରଦା ପ୍ରସନ୍ନ ଦାସ, ପ୍ରାରମ୍ଭିକ ସୂଚନା ଦେଇଥିଲେ । ଗୀତଗୋବିନ୍ଦ ଗାନ କରାଯିବା ସହ ଜୟଦେବକୃତ ଦଶାବତାରକୁ ଘେନି ନୃତ୍ୟ ପରିବେଷଣ କରିଥିଲେ ସୁଶ୍ରୀ ଶୁଭଲକ୍ଷ୍ମୀ ଦାସ । ଜୟନ୍ତୀ ସମାରୋହର ସମସ୍ତ କାର୍ଯ୍ୟକ୍ରମରେ ସହାୟତା କରିଥିଲେ ଜିଲ୍ଲା ପାଠାଗାରର ଗ୍ରନ୍ଥାଗାରିକ ଶ୍ରୀ ଲକ୍ଷ୍ମୀ ପ୍ରସାଦ ଦ୍ୱିବେଦୀ ।

ସୌଜନ୍ୟ : ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ, ଅନୁଗୋଳ

# ସମ୍ବାଦ ପରିକ୍ରମା

## ବ୍ୟକ୍ତି ସ୍ୱାଧୀନତାର ସୁରକ୍ଷା କ୍ଷେତ୍ରରେ ଆଇନ୍‌ଜୀବୀଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ : ଆଇନ୍ ମନ୍ତ୍ରୀ

ନାଗରିକମାନଙ୍କ ନ୍ୟାଯ୍ୟ ଅଧିକାର ପ୍ରତି ମୁହୂର୍ତ୍ତରେ ବିପନ୍ନ ହେଉଛି । ବ୍ୟକ୍ତି ସ୍ୱାଧୀନତାକୁ ଛଡ଼ାଇ ନିଆଯାଇଛି । ଆଇନ୍‌ଜୀବୀ ନଥିଲେ ନାଗରିକ ଅଧିକାର ତଥା ବ୍ୟକ୍ତି ସ୍ୱାଧୀନତାର ସୁରକ୍ଷା ହୋଇପାରନ୍ତା ନାହିଁ । ଗଣତନ୍ତ୍ରର ଭିତ୍ତିଭୂମି ଦୋହଲି ଯାଇଥାନ୍ତା । ତେଣୁ ଆଇନଜୀବୀ ହିଁ ନାଗରିକ ଅଧିକାର ତଥା ବ୍ୟକ୍ତି ସ୍ୱାଧୀନତାର ରକ୍ଷାକର୍ତ୍ତା ବୋଲି ଆଇନ୍ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ମତବ୍ୟକ୍ତ କରିଛନ୍ତି ।

ଗତ ମାର୍ଚ୍ଚ ୩୧ ତାରିଖରେ ଢେଙ୍କାନାଳ ଆଇନ୍ ମହାବିଦ୍ୟାଳୟର ରଜତ ଜୟନ୍ତୀ ଉତ୍ସବ ପାଳନ ଅବସରରେ ମୁଖ୍ୟ ଅତିଥି ଭାବେ ଯୋଗଦେଇ ଆଇନ୍ ମନ୍ତ୍ରୀ ଶ୍ରୀ ହରିଚନ୍ଦନ କହିଲେ ଯେ ସ୍ୱାଧୀନତା ସଂଗ୍ରାମରେ ଆଇନ୍‌ଜୀବୀମାନଙ୍କ ଭୂମିକା ମହତ୍ୱପୂର୍ଣ୍ଣ ଥିଲା । ସ୍ୱାଧୀନତା ଆନ୍ଦୋଳନର ସମସ୍ତ ଆଗଧାଡ଼ିର ନେତା ଆଇନ୍‌ଜୀବୀ ଥିଲେ । ସ୍ୱାଧୀନୋତ୍ତର କାଳରେ ଗଣତନ୍ତ୍ରକୁ ସୁଦୃଢ଼ କରିବା, ବ୍ୟକ୍ତି ସ୍ୱାଧୀନତାକୁ ରକ୍ଷା କରିବା, ନାଗରିକ ଅଧିକାର ଯେପରି ଅପହୃତ ନହୁଏ, ତାହା ଦେଖିବା ଆଇନ୍‌ଜୀବୀମାନଙ୍କ ପ୍ରଥମ କର୍ତ୍ତବ୍ୟ । ବଞ୍ଚିତ, ଦଳିତ, ନିଷ୍ପେସିତ ଲୋକମାନଙ୍କୁ ନ୍ୟାୟ ପ୍ରଦାନ ଦିଗରେ ସେମାନଙ୍କର ବିରାଟ ଦାୟିତ୍ୱ ରହିଛି । ଆଇନ୍ ଆଗରେ ସମସ୍ତେ ସମାନ ବୋଲି ସମ୍ବିଧାନରେ ଉଲ୍ଲିଖିତ ହୋଇଥିଲେ ମଧ୍ୟ ବାସ୍ତବ କ୍ଷେତ୍ରରେ ଦୋଷୀ ସବୁବେଳେ ଦଣ୍ଡ ପାଇ ନଥାଏ । ପ୍ରଭାବଶାଳୀ ବ୍ୟକ୍ତିମାନଙ୍କ କବଜାରୁ ଆଇନ୍‌କୁ ପଥଭ୍ରଷ୍ଟ ହେବାରୁ ମୁକ୍ତ କରି ଯଥାର୍ଥରେ ନିର୍ଦ୍ଦୋଷକୁ ଦୋଷମୁକ୍ତ ବୋଲି ପ୍ରମାଣ କରି, ନ୍ୟାୟଭିକ୍ଷୁ ଗରିବ ଲୋକଙ୍କୁ ଶୀଘ୍ର ନ୍ୟାୟ ପ୍ରଦାନ କରିବା ଆଇନ୍‌ଜୀବୀମାନଙ୍କ ଗୁରୁ ଦାୟିତ୍ୱ । ବରିଷ୍ଠ ଓ ଦକ୍ଷ ଆଇନ୍‌ଜୀବୀମାନେ ନିଜ ଜୀବିକାରେ ଯେତେ ବ୍ୟସ୍ତ ରହିଥିଲେ ମଧ୍ୟ ସମାଜର ଦରିଦ୍ରତମ ନ୍ୟାୟଭିକ୍ଷୁ ପାଇଁ ମାଗଣାରେ ଆଇନ୍ ସହାୟତା ପ୍ରଦାନ କରିବାକୁ ଆଗଭର ହେବା ବାଞ୍ଛନୀୟ ବୋଲି ଆଇନ୍ ମନ୍ତ୍ରୀ ଶ୍ରୀ ହରିଚନ୍ଦନ ମତବ୍ୟକ୍ତ କରିଥିଲେ ।

ଢେଙ୍କାନାଳ ଜିଲ୍ଲାପାଳ ଜମିଲ୍ ଅହମ୍ମଦ ଖାଁ ସମ୍ମାନୀୟ ଅତିଥି ଭାବେ ଯୋଗଦେଇ କହିଲେ ଯେ, ଢେଙ୍କାନାଳ ଆଇନ୍ ମହାବିଦ୍ୟାଳୟ ରାଜ୍ୟରେ ନିଜର ଏକ ସ୍ୱତନ୍ତ୍ର ସୁନାମ ରଖିପାରିଛି । ଏହି ଆଇନ୍ ମହାବିଦ୍ୟାଳୟର ଛାତ୍ରଛାତ୍ରୀମାନେ କେବଳ ଯେ ଶୃଙ୍ଖଳିତ ତା' ନୁହେଁ, ଦକ୍ଷ ଓ ସମର୍ପିତ ଆଇନ୍‌ଜୀବୀ ହେବାପାଇଁ ମାନସିକ ସ୍ତରରେ ପ୍ରସ୍ତୁତ । ଏହି ଆଇନ୍ ମହାବିଦ୍ୟାଳୟ ନୂତନ କୀର୍ତ୍ତିମାନ ସ୍ଥାପନ କରୁ ବୋଲି ସେ କାମନା କରିଥିଲେ ।

ପରିଚାଳନା କମିଟି ଅଧ୍ୟକ୍ଷ ତଥା ପୂର୍ବତନ ଢେଙ୍କାନାଳ ବିଧାୟକ କୃଷ୍ଣଚନ୍ଦ୍ର ପାତ୍ରଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଏହି ଉତ୍ସବରେ ମହାବିଦ୍ୟାଳୟର ଅଧ୍ୟକ୍ଷ ପ୍ରତାପରୁଦ୍ର ମହାପାତ୍ର, ଢେଙ୍କାନାଳ ମ୍ୟୁନିସିପାଲିଟିର ଚେୟାରମ୍ୟାନ ସୁନୀଲ ଶର୍ମା ପ୍ରମୁଖ ଉଦ୍‌ବୋଧନ ଦେଇଥିଲେ ।

(ଏ ସମସ୍ତ ସମ୍ବାଦ ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗର)

## ଅପ୍ରେଲ ପହିଲାରୁ ଖୋର୍ଦ୍ଧା ଜିଲ୍ଲାରେ ଜାତୀୟ ଗ୍ରାମ୍ୟ ନିଶ୍ଚିତ କର୍ମନିଯୁକ୍ତି ଯୋଜନା

ଖୋର୍ଦ୍ଧା ଜିଲ୍ଲା ପରିଷଦର ଚତୁର୍ଥ ସାଧାରଣ ବୈଠକ ଗତ ମାର୍ଚ୍ଚ ୩୧ ତାରିଖ ପୂର୍ବାହ୍ନରେ ଭୁବନେଶ୍ୱରସ୍ଥ ସ୍ପେଶାଲ ସର୍କିଟ ହାଉସଠାରେ ପରିଷଦର ଅଧ୍ୟକ୍ଷ ଶ୍ରୀ ବିଭୂତି ବଳବନ୍ତ ରାୟଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା । ବୈଠକର ପ୍ରାରମ୍ଭରେ ଅଧ୍ୟକ୍ଷ ଉପସ୍ଥିତ ସଭ୍ୟମାନଙ୍କୁ ସ୍ୱାଗତ ଜଣାଇବା ସହିତ ତା.୦୧.୦୪.୦୮ ରିଖଠାରୁ ଜିଲ୍ଲାରେ ନୂତନ ଭାବେ କାର୍ଯ୍ୟକାରୀ ହେବାକୁ ଯାଉଥିବା ଜାତୀୟ ଗ୍ରାମ୍ୟ ନିଶ୍ଚିତ କର୍ମନିଯୁକ୍ତି ଯୋଜନାର ସଫଳ ରୂପାୟନ ନିମନ୍ତେ ସମସ୍ତଙ୍କର ସହଯୋଗ କାମନା କରିଥିଲେ ।

ଜିଲ୍ଲାପାଳ ଶ୍ରୀ ନାରାୟଣ ଚନ୍ଦ୍ର ଜେନା ଜାତୀୟ ଗ୍ରାମ୍ୟ କର୍ମନିଯୁକ୍ତି ଯୋଜନା ସଂପର୍କରେ ପୂର୍ବରୁ ନିଆଯାଇଥିବା ବିଭିନ୍ନ ପଦକ୍ଷେପ ସମ୍ବନ୍ଧରେ ସୂଚନା ଦେବା ସହିତ ଯୋଜନାର କାର୍ଯ୍ୟକାରିତା ବିଷୟରେ ବିଶଦ ଭାବେ ଆଲୋକପାତ କରିଥିଲେ । ଉକ୍ତ ଯୋଜନା ମାଧ୍ୟମରେ ଜିଲ୍ଲାରେ କର୍ମ ଅନ୍ୱେଷଣ କରୁଥିବା ବ୍ୟକ୍ତିଙ୍କୁ ଏକବର୍ଷ ମଧ୍ୟରେ ଅନ୍ୟୁନ ୧୦୦ ଦିନ କାମ ଯୋଗାଇ ଦିଆଯିବ । ଯେଉଁ ବ୍ୟକ୍ତିମାନେ କର୍ମନିଯୁକ୍ତି ନିମନ୍ତେ ନାମ ପଞ୍ଜିକରଣ କରିବେ, ସେହିମାନଙ୍କୁ ହିଁ ଏହି ସୁଯୋଗ ପ୍ରଦାନ କରାଯିବ । ତଦନୁଯାୟୀ ଅଦ୍ୟାବଧି ଜିଲ୍ଲାରେ ୯୮,୦୦୦ରୁ ଊର୍ଦ୍ଧ୍ୱ ବ୍ୟକ୍ତି ସେମାନଙ୍କର ନାମ ପଞ୍ଜିକରଣ କରିଛନ୍ତି ବୋଲି ଜିଲ୍ଲାପାଳ ପ୍ରକାଶ କରିଥିଲେ । ଏଥିନିମନ୍ତେ ପ୍ରତି ପଞ୍ଚାୟତକୁ ୟୁନିଟ୍ ଭାବେ ଗ୍ରହଣ କରାଯାଇଛି । କାମ ଦାବି କରୁଥିବା ବ୍ୟକ୍ତିଙ୍କୁ ୧୫ ଦିନ ମଧ୍ୟରେ କାମ ଯୋଗାଇ ନପାରିଲେ ସେମାନଙ୍କୁ ବେକାରୀ ଭତ୍ତା ପ୍ରଦାନ କରାଯିବ ବୋଲି ସେ ପ୍ରକାଶ କରିଥିଲେ । ଏହି ପରିପ୍ରେକ୍ଷୀରେ ପ୍ରତ୍ୟେକ ଗ୍ରାମ ଓ ପଞ୍ଚାୟତମାନଙ୍କରେ ଶ୍ରମଭିତ୍ତିକ ବିଭିନ୍ନ ପ୍ରକଳ୍ପମାନ କାର୍ଯ୍ୟକାରୀ କରାଯିବ ବୋଲି ଜିଲ୍ଲାପାଳ ସୂଚନା ଦେଇଥିଲେ । ଏତଦ୍‌ବ୍ୟତୀତ ଉକ୍ତ ବୈଠକରେ ସଂପୂର୍ଣ୍ଣ ଗ୍ରାମୀଣ ରୋଜଗାର ଯୋଜନା (ଜଙ୍ଗଲ ଅଧିକାର) ସ୍ୱୀକୃତି ନିୟମ, ସର୍ବକ୍ଷମା ଅଭିଯାନ ଓ ବିଜୁ ଗ୍ରାମ୍ୟଜ୍ୟୋତି ଯୋଜନା ଇତ୍ୟାଦି ବିଷୟରେ ମଧ୍ୟ ଆଲୋଚନା ହୋଇଥିଲା । ସମୀକ୍ଷାରୁ ଜଣାଗଲା ଯେ, ବିଜୁ ଗ୍ରାମ୍ୟଜ୍ୟୋତି ଯୋଜନା ମାଧ୍ୟମରେ ଜିଲ୍ଲାରେ ୩୬୨ କୋଟି ଟଙ୍କା ବ୍ୟୟଅଟକଳରେ ୨୧୬ ଗୋଟି ଗ୍ରାମରେ ବିଦ୍ୟୁତ୍‌କରଣ କରାଯିବ । ଜିଲ୍ଲାରେ ଅଦ୍ୟାବଧି ୬ ଗୋଟି ବ୍ଲକ୍‌ରେ କାର୍ଯ୍ୟ ଆରମ୍ଭ ହୋଇଥିବାବେଳେ ଅବଶିଷ୍ଟ ୪ ଗୋଟି ବ୍ଲକ୍‌ରେ ଯଥାଶୀଘ୍ର କାର୍ଯ୍ୟ ଆରମ୍ଭ ହେବ ବୋଲି ବିଭାଗୀୟ ଅଧିକାରୀ ପ୍ରକାଶ କରିଥିଲେ ।

ଉକ୍ତ ବୈଠକରେ ଚିଲିକା ବିଧାୟକ ଡଃ ବିଭୂତି ଭୂଷଣ ହରିଚନ୍ଦନ, ବାଲିପାଟଣା ବିଧାୟକ ଶଶିଭୂଷଣ ବେହେରା, ଖୋର୍ଦ୍ଧା ବିଧାୟକ ଶ୍ରୀ ଜିତେନ୍ଦ୍ର ନାଥ ମିତ୍ର, ପୁରୀ ସାଂସଦଙ୍କ ପ୍ରତିନିଧି, ବେଗୁନିଆ ବିଧାୟକଙ୍କର ପ୍ରତିନିଧି, ପରିଷଦର ଉପାଧକ୍ଷା ବାସନ୍ତି ମହାପାତ୍ର, ସମସ୍ତ ଜିଲ୍ଲା ପରିଷଦର ସଦସ୍ୟ/ସଦସ୍ୟା, ପଞ୍ଚାୟତ ସମିତିର ଅଧକ୍ଷ/ଅଧକ୍ଷା, ସମସ୍ତ ଗୋଷ୍ଠୀ ଉନ୍ନୟନ ଅଧିକାରୀ ଓ ଜିଲ୍ଲାସ୍ତରୀୟ ପଦାଧିକାରୀମାନେ ଯୋଗ ଦେଇ ଆଲୋଚନାରେ ଅଂଶଗ୍ରହଣ କରିଥିଲେ ।

## ଦୁଗ୍ଧ ଉତ୍ପାଦନର ବିକାଶ ପାଇଁ ୪୬୮.୭୩ ଲକ୍ଷ ଟଙ୍କାର ପ୍ରକଳ୍ପ

ପୁରୀ, ଖୋର୍ଦ୍ଧା, ନୟାଗଡ଼ ଏବଂ ବୌଦ୍ଧ ଜିଲ୍ଲାରେ ଦୁଗ୍ଧ ଉତ୍ପାଦନର ବିକାଶ ପାଇଁ ୪୬୮.୭୩ ଲକ୍ଷ ଟଙ୍କାର ଏକ ପ୍ରକଳ୍ପ ରାଷ୍ଟ୍ରୀୟ କୃଷି ବିକାଶ ଯୋଜନା ଅନ୍ତର୍ଗତ ରାଜ୍ୟସ୍ତରୀୟ କମିଟି ଦ୍ୱାରା ଅନୁମୋଦିତ ହୋଇଛି । ଏହି ଅର୍ଥ ୩ ବର୍ଷରେ ପ୍ରକଳ୍ପର କାର୍ଯ୍ୟକାରିତା ପାଇଁ ଖର୍ଚ୍ଚ କରାଯିବ । ପ୍ରଥମ ବର୍ଷରେ କେବଳ ୨୧୧.୪୬ ଲକ୍ଷ ଟଙ୍କା ଏହି ପ୍ରକଳ୍ପରେ ଖର୍ଚ୍ଚ ହେବା ପାଇଁ ଧାର୍ଯ୍ୟ କରାଯାଇଛି ବୋଲି ମତ୍ସ୍ୟ ଓ ପଶୁସଂପଦ ବିକାଶ ବିଭାଗ ସୂତ୍ରରୁ ଜଣାପଡ଼ିଛି ।

## ଯୁଦ୍ଧକାଳୀନ ଭିତ୍ତିରେ ପ୍ରତ୍ୟେକ ଗାଁକୁ ପାନୀୟ ଜଳଯୋଗାଣ ପାଇଁ ମନ୍ତ୍ରୀଙ୍କ ପ୍ରତିଶ୍ରୁତି

ପ୍ରତ୍ୟେକ ଗାଁରେ ବିଶୁଦ୍ଧ ପାନୀୟ ଜଳ ଉପଲବ୍ଧ କରାଇବା ପାଇଁ ବ୍ୟାପକ ଉଦ୍ୟମ ଚାଲିଛି । ସ୍ୱାଧୀନତା ପାଇବା ପରଠାରୁ ୨୦୦୭ ମାର୍ଚ୍ଚ ପର୍ଯ୍ୟନ୍ତ ରାଜ୍ୟରେ ୧୧୨୬ଟି ଗ୍ରାମ୍ୟ ପାଇପ୍ ଜଳଯୋଗାଣ ପ୍ରକଳ୍ପ ସଂପୂର୍ଣ୍ଣ ହୋଇଥିଲେ ହେଁ ୨୦୦୭ ମାର୍ଚ୍ଚରୁ ୨୦୦୮ ମାର୍ଚ୍ଚ ଏହି ବର୍ଷକ ମଧ୍ୟରେ ୧୦୧୦ଟି ଜଳଧାରା ପ୍ରକଳ୍ପ ସଂପୂର୍ଣ୍ଣ ହୋଇପାରିଛି । ଆଗାମୀ ମାର୍ଚ୍ଚ ଶେଷସୁଦ୍ଧା ଗ୍ରାମାଞ୍ଚଳରେ ଆଉ ୨୦୦୦ଟି ପାଇପ୍ ଜଳଯୋଗାଣ ପ୍ରକଳ୍ପ କାର୍ଯ୍ୟକ୍ଷମ ହେବ ବୋଲି ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ପ୍ରକାଶ କରିଛନ୍ତି ।

ଗତ ୭ ତାରିଖରେ କଳାହାଣ୍ଡି ଜିଲ୍ଲା ଗସ୍ତକରି ଜୁନାଗଡ଼ ବ୍ଲକ୍‌ର ନକ୍‌ଟିଗୁଡ଼ାରେ ଗ୍ରାମ୍ୟ ପାଇପ୍ ଜଳଯୋଗାଣ ପ୍ରକଳ୍ପକୁ ଉଦ୍‌ଘାଟନ କରି ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ କହିଲେ ଯେ ଜଳ ହିଁ ଜୀବନ । ବିଶେଷତଃ କ୍ରମବର୍ଦ୍ଧିଷ୍ଣୁ ରୌଦ୍ରତାପ ଦୃଷ୍ଟିରୁ ଗ୍ରାମାଞ୍ଚଳରେ ପାନୀୟ ଜଳର ଗୁରୁତ୍ୱ ସର୍ବାଧିକ । ଯୁଦ୍ଧକାଳୀନ ଭିତ୍ତିରେ ପ୍ରତିଟି ଗାଁରେ ପାନୀୟ ଜଳ ପହଞ୍ଚାଇବା ପାଇଁ ରାଜ୍ୟ ସରକାର ବ୍ୟାପକ ପଦକ୍ଷେପ ନେଉଛନ୍ତି । ଜଳଧାରା ଯୋଜନା ଗ୍ରାମାଞ୍ଚଳର ଉନ୍ନତିର ନିଦର୍ଶନ ହୋଇଛି । ଏହି କାର୍ଯ୍ୟକ୍ରମ ଜରିଆରେ ଗ୍ରାମାଞ୍ଚଳରେ ବସବାସ କରୁଥିବା ପ୍ରତ୍ୟେକଙ୍କ ହାତପାଆନ୍ତାରେ ବିଶୁଦ୍ଧ ନିରାପଦ ପାନୀୟ ଜଳ ଯୋଗାଇ ଦେବାର ବ୍ୟବସ୍ଥା କରାଯାଉଛି । ପୂର୍ବରୁ ସ୍ୱଜଳଧାରା ଯୋଜନାରେ ଗ୍ରାମବାସୀଙ୍କୁ ୧୦ ଭାଗ ଅର୍ଥ ପୈଠ କରିବାକୁ ପଡୁଥିଲା । ମାତ୍ର ଜଳଧାରା ଯୋଜନାରେ ଗ୍ରାମବାସୀଙ୍କୁ ଟଙ୍କାଟିଏ ଦେବାକୁ ପଡୁ ନାହିଁ । ଗୋଟିଏ ପଞ୍ଚାୟତରେ ସବୁଠୁଁ ବଡ଼ ଗ୍ରାମ ଓ ପର୍ଯ୍ୟାୟକ୍ରମେ ଅନ୍ୟ ଗାଁଗୁଡ଼ିକୁ ପାଇପ୍ ଯୋଗେ ଜଳଯୋଗାଣ କରାଯାଉଛି । ୨୦୦୮ ମାର୍ଚ୍ଚ ଶେଷସୁଦ୍ଧା ୭,୧୫୩ଟି ଜଳଉତ୍ସ ଚିହ୍ନଟ ହୋଇସାରିଛି । ସେଗୁଡ଼ିକର ଜଳ ଜଳଧାରା ଯୋଜନାରେ ବିନିଯୋଗ କରାଯାଇ ଗ୍ରାମାଞ୍ଚଳରେ ପାନୀୟ ଜୟ ଯୋଗାଇ ଦିଆଯିବ । ଜୁନାଗଡ଼

ବ୍ଲକ୍‌ର ନକ୍‌ଟିଗୁଡ଼ା ଓ ସନ୍ନିକଟ ଗାଁଗୁଡ଼ିକର ଜଳାଭାବ ଦୂର କରିବାରେ ଏହି ପ୍ରକଳ୍ପ ସକ୍ଷମ ହେବ । ଏହି ଜଳଯୋଗାଣ ପ୍ରକଳ୍ପ ଅଞ୍ଚଳର ବହୁ ପ୍ରତୀକ୍ଷିତ ସ୍ୱପ୍ନକୁ ସାକାର କରିପାରିଛି ବୋଲି ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ ହରିଚନ୍ଦନ ପ୍ରକାଶ କରିଥିଲେ ।

ପରେ ଭବାନୀପାଟଣା ବ୍ଲକ୍‌ର ଥୁଆପଦରଠାରେ ଗ୍ରାମ୍ୟ ଜଳଯୋଗାଣ ପ୍ରକଳ୍ପର ଶିଳାନ୍ୟାସ କରି ମନ୍ତ୍ରୀ ଶ୍ରୀ ହରିଚନ୍ଦନ ଅନ୍ୟ ଏକ ସାଧାରଣ ସଭାରେ ଉଦ୍‌ବୋଦନ ଦେଇଥିଲେ ।

ଏହି କାର୍ଯ୍ୟକ୍ରମରେ ରାଜସ୍ୱ ମନ୍ତ୍ରୀ ଶ୍ରୀ ମନମୋହନ ସାମଲ, ଶ୍ରମ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପ୍ରଦୀପ ନାୟକ, ସାଂସଦ ଶ୍ରୀ ବିକ୍ରମ କେଶରୀ ଦେଓ, ବିଧାୟକ ଶ୍ରୀ ହିମାଂଶୁ ମେହେର, ପଞ୍ଚାୟତ ସମିତି ଚେୟାରମ୍ୟାନ ଶ୍ରୀ ମନୋଜ ମେହେର, ଅତିରିକ୍ତ ଜିଲ୍ଲାପାଳ, ନିର୍ବାହୀ ଯନ୍ତ୍ରୀ, ସରପଞ୍ଚ ପ୍ରମୁଖ ଯୋଗ ଦେଇ ସରକାରଙ୍କ ବିଭିନ୍ନ ଜନହିତକର ଯୋଜନା ସମ୍ବନ୍ଧରେ ଆଲୋକପାତ କରିଥିଲେ ।

## ଜଳବାୟୁ ପରିବର୍ତ୍ତନରେ ସ୍ଥିରତା ଆଣିବା ଉପରେ ଆୟୋଜିତ କର୍ମଶାଳାରେ ଗୁରୁତ୍ୱ

ଗତ ଅପ୍ରେଲ ସାତ ତାରିଖରେ ବିଶ୍ୱ ସ୍ୱାସ୍ଥ୍ୟ ଦିବସ ପାଳନ ଅବସରରେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ଏବଂ ଫାମିଲି ପ୍ଲାନିଂ ଆସୋସିଏସନ ଅଫ୍ ଇଣ୍ଡିଆର ମିଳିତ ସହଯୋଗରେ ଏକ କର୍ମଶାଳା ଆୟୋଜିତ ହୋଇଥିଲା । ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗର ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସନାତନ ବିଶି ଏହି କର୍ମଶାଳାକୁ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରି କହିଲେ ଯେ ଜଳବାୟୁ ପରିବର୍ତ୍ତନର ପରିସର ଅତ୍ୟନ୍ତ ବ୍ୟାପକ । ବିଭିନ୍ନ କ୍ଷେତ୍ରରେ ଏହାର ପ୍ରତିକୂଳ ପ୍ରଭାବ ପଡ଼ିଥାଏ । ଏଣୁ ଏହି ଜଳବାୟୁରେ ପରିବର୍ତ୍ତନରେ ସ୍ଥିରତା ଆଣିବା ସହିତ ଏହାର ପ୍ରତିକୂଳ ପ୍ରଭାବରୁ ସୁରକ୍ଷା ପାଇଁ ବିଶ୍ୱବ୍ୟାପୀ ଆରମ୍ଭ ହୋଇଥିବା ଅଭିଯାନକୁ ସଫଳ କରିବା ପାଇଁ ସବୁ ସ୍ତରରେ ଆନ୍ତରିକ ଉଦ୍ୟମ ହେବା ଦରକାର । ସମାଜର ବିଭିନ୍ନ ବର୍ଗର ଲୋକଙ୍କୁ ଏହି ଅଭିଯାନରେ ସାମିଲ କରାଯିବା ଉପରେ ମନ୍ତ୍ରୀ ଶ୍ରୀ ବିଶି ଗୁରୁତ୍ୱାରୋପ କରିଥିଲେ । ସ୍ୱାସ୍ଥ୍ୟ ଉପରେ ଜଳବାୟୁର ପରିବର୍ତ୍ତନ ବିଶେଷ ପ୍ରଭାବ ପକାଉଥିବାରୁ ସ୍ୱାସ୍ଥ୍ୟ ବିଭାଗ ନିଜକୁ ପ୍ରସ୍ତୁତ କରି ଏହାର ସମ୍ମୁଖୀନ ହେବାକୁ ସେ ପରାମର୍ଶ ଦେଇଥିଲେ ।

ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ଶାସନ ସଚିବ ଶ୍ରୀ ତୁହିନକାନ୍ତ ପାଣ୍ଡେ ଜଳବାୟୁ ପରିବର୍ତ୍ତନଜନିତ ସମସ୍ୟା ଉପରେ ଆଲୋକପାତ କରିଥିଲେ । ସେ କହିଲେ ଯେ ସ୍ୱଚ୍ଛ ପାନୀୟ ଜଳ, ପ୍ରଦୂଷଣମୁକ୍ତ ପରିବେଶ, ପୁଷ୍ଟିକର ଆହାର ସହିତ ରୋଗ ପ୍ରତିରୋଧର କ୍ଷମତା ବୃଦ୍ଧି ଏବଂ ଦେଖା ଦେଉଥିବା ବିଭିନ୍ନ ରୋଗର ସଠିକ୍ ନିରୂପଣ ଓ ନିରାକରଣ ଆଦି କାର୍ଯ୍ୟପଦ୍ଧତି ଜନସ୍ୱାସ୍ଥ୍ୟ ସେବାର ଗୁରୁତ୍ୱପୂର୍ଣ୍ଣ ଅଙ୍ଗ । ଏଣୁ ଆମର ଜନସ୍ୱାସ୍ଥ୍ୟ ବ୍ୟବସ୍ଥାର ଆହୁରି ଅଧିକ ସୁଦୃଢ଼ୀକରଣ, ପରିମଳ, ରୋଗ ନିରୀକ୍ଷଣ ଏବଂ ଟୀକାଦାନ ଆଦି ସେବାରେ ଉନ୍ନତି ଆଣି ବର୍ତ୍ତମାନଠାରୁ ପ୍ରସ୍ତୁତ ରହିବାକୁ କହିଥିଲେ ।

ଏଫ୍.ପି.ଆଇ.ଏ.ର ପୂର୍ବତନ ସଭାପତି ଶ୍ରୀ ପ୍ରତାପ କୁମାର ଦାସଙ୍କ ପୌରୋହିତ୍ୟରେ ଅନୁଷ୍ଠିତ ଏହି ଉଦ୍‌ଘାଟନୀ ଉତ୍ସବରେ ମିଶନ ନିର୍ଦ୍ଦେଶକ ସୁଶୀଲ କୁମାର ଲୋହାନୀ ଏବଂ ଜଙ୍ଗଲ ବିଭାଗ ନିର୍ଦ୍ଦେଶକ ଭାଗୀରଥୀ ବେହେରା ପ୍ରମୁଖ ଉଦ୍‌ବୋଧନ ଦେଇ ଜଳବାୟୁ ପରିବର୍ତ୍ତନର ବିଭିନ୍ନ ଦିଗ ସଂପର୍କରେ ଆଲୋଚନା କରିଥିଲେ । ପରେ ବିଶେଷଜ୍ଞମାନେ ଜଳବାୟୁର ପରିବର୍ତ୍ତନ ଓ ଏହାର ପ୍ରତିକୂଳ ପ୍ରଭାବ ସଂପର୍କରେ ତଥ୍ୟମାନ ଉପସ୍ଥାପନ କରିଥିଲେ ।

## ରାଜଧାନୀର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଁ ସମ୍ମିଳିତ ଉଦ୍ୟମ ଆବଶ୍ୟକ

ରାଜଧାନୀ ଭୁବନେଶ୍ୱର ସୌନ୍ଦର୍ଯ୍ୟହାନୀ ହେଲାଭଳି କୌଣସି କାର୍ଯ୍ୟ ଯେପରି କରାନଯାଏ, ସେଥିପାଇଁ ସରକାରୀ ଓ ବେସରକାରୀ ସ୍ତରରେ ଉପଯୁକ୍ତ ପଦକ୍ଷେପ ଗ୍ରହଣ କରିବାକୁ ବିଶିଷ୍ଟ ବକ୍ତାମାନେ ଆହ୍ୱାନ ଜଣାଇବା ସହିତ ରାଜଧାନୀର ସର୍ବାଙ୍ଗୀନ ବିକାଶ ନିମନ୍ତେ ସମ୍ମିଳିତ ଉଦ୍ୟମ ଅବ୍ୟାହତ ରଖିବାକୁ ପରାମର୍ଶ ଦେଇଛନ୍ତି ।

ରାଜ୍ୟ ବିଧାନସଭା ସମ୍ମୁଖସ୍ଥ ଶିଳାନ୍ୟାସ ଫଳକ ନିକଟରେ ୬୦ ତମ ରାଜଧାନୀ ପ୍ରତିଷ୍ଠା ଦିବସ ସମାରୋହରେ ଉଦ୍‌ବୋଧନ ଦେଇ ବକ୍ତାମାନେ ଏହି ଆହ୍ୱାନ ଜଣାଇଥିଲେ ।

ଏ ଅବସରରେ ସେଠାରେ ଆୟୋଜିତ ଚିତ୍ତାକର୍ଷକ ବେସାମରିକ ପ୍ୟାରେଡ୍‌ରେ ମୁଖ୍ୟ ଅତିଥି ରୂପେ ଯୋଗଦେଇ ଶିକ୍ଷା, ଗ୍ରାମ୍ୟ ଉନ୍ନୟନ ଓ ଆଇନ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଅଭିବାଦନ ଗ୍ରହଣ କରି ଭୁବନେଶ୍ୱରର ଗୌରବମୟ ଐତିହ୍ୟ ଓ ପରମ୍ପରା ସଂପର୍କରେ ଆଲୋଚନା

କରିଥିଲେ । ଓଡ଼ିଆ ଭାଷାର ମର୍ଯ୍ୟାଦା ଓ ସ୍ୱାଭିମାନର ସୁରକ୍ଷା ପାଇଁ ବିଭିନ୍ନ ବର୍ଗର ଜନସାଧାରଣ ଆଗେଇ ଆସିବାକୁ ସେ ଆହ୍ୱାନ ଦେବା ସହିତ ଆଗାମୀ ୧୫ ଦିନ ମଧ୍ୟରେ ଏ ଦିଗରେ ଫଳପ୍ରଦ କାର୍ଯ୍ୟାନୁଷ୍ଠାନ ନହେଲେ ସେ ନିଜେ ପଦଯାତ୍ରା କରିବେ ବୋଲି ପ୍ରକାଶ କରିଥିଲେ ।

ଏହି ଉତ୍ସବରେ ମୁଖ୍ୟବକ୍ତା ଭାବେ ଯୋଗଦେଇ ଅର୍ଥ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ କହିଲେ ଯେ, କିଛି ବ୍ୟକ୍ତିବିଶେଷ ଓ ରାଜନୈତିକ ଅନୁଷ୍ଠାନ ସହରର କାନ୍ଥବାଡ଼କୁ ଅପରିଷ୍କାର କରିବା ସହିତ ମହାପୁରୁଷମାନଙ୍କ ପ୍ରତିମୂର୍ତ୍ତିରେ ପୋଷ୍ଟର ଲଗାଇ ସୌନ୍ଦର୍ଯ୍ୟହାନୀ ହେଲାଭଳି କାର୍ଯ୍ୟ କରୁଛନ୍ତି । ଏହାକୁ ରୋକାଯାଇ ରାଜଧାନୀକୁ ଅଧିକ ବିକଶିତ, ସମୃଦ୍ଧ ଓ ସୌନ୍ଦର୍ଯ୍ୟମୟ କରିବାକୁ ସେ ଆହ୍ୱାନ ଜଣାଇଥିଲେ । ରାଜଧାନୀ ପ୍ରତିଷ୍ଠା ଦିବସ ଉତ୍ସବକୁ ସରକାରୀ ଭାବେ ପାଳନ କରିବା ପାଇଁ ପ୍ରସ୍ତାବ ଦିଆଗଲେ ଆବଶ୍ୟକ ଅର୍ଥ ଯୋଗାଇଦେବାରେ ସରକାରଙ୍କ କୌଣସି ଅସୁବିଧା ହେବନାହିଁ ବୋଲି ସେ କହିଥିଲେ ।

ଉଚ୍ଚଶିକ୍ଷା ମନ୍ତ୍ରୀ ସମୀର ଦେ ଏହି ଉତ୍ସବରେ ସମ୍ମାନିତ ଅତିଥି ରୂପେ ଯୋଗଦେଇ କହିଲେ ଯେ, ରାଜଧାନୀର ପରିବେଶକୁ ଉନ୍ନତମାନର କରିବାକୁ ହେଲେ ପ୍ରଥମେ ନିଜ ଘରର ପରିବେଶକୁ ନିର୍ମଳ ଓ ରୁଚିପୂର୍ଣ୍ଣ କରାଯିବା ଉଚିତ ।

ଭୁବନେଶ୍ୱର ମହାନଗର ନିଗମର ମେୟର ମିହିର କୁମାର ମହାନ୍ତି ଅନ୍ୟତମ ସମ୍ମାନିତ ଅତିଥି ଭାବେ ଯୋଗଦେଇ ରାଜଧାନୀର ସର୍ବାଙ୍ଗୀନ ବିକାଶ ପାଇଁ କାର୍ଯ୍ୟକାରୀ ହେଉଥିବା ସୁଚିନ୍ତିତ ଯୋଜନାଗୁଡ଼ିକ ସଂପର୍କରେ ଉଲ୍ଲେଖ କରିବା ସଂଗେସଂଗେ ଏହି ସହରକୁ ଦେଶର ଏକ ନମ୍ବର ରାଜଧାନୀରେ ପରିଣତ କରିବାକୁ ଆହ୍ୱାନ ଦେଇଥିଲେ । ପୂର୍ବତନ ମନ୍ତ୍ରୀ ସୁରେଶ କୁମାର ରାଉତରାୟ ରାଜ୍ୟର ଅନ୍ୟ ସହରଗୁଡ଼ିକ ତୁଳନାରେ ଭୁବନେଶ୍ୱର ନଗରୀର ବୈଶିଷ୍ଟ୍ୟ ସଂପର୍କରେ ବିଭିନ୍ନ ଦିଗରୁ ଆଲୋଚନା କରିଥିଲେ ।

ରାଜଧାନୀ ପ୍ରତିଷ୍ଠା ଦିବସ ପାଳନ କମିଟିର ସଭାପତି ଶ୍ରୀ ପ୍ରଦୋଷ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ସମାରୋହରେ ପ୍ରସ୍ତୁତି କମିଟିର ଅଧ୍ୟକ୍ଷ ତଥା ଖୋର୍ଦ୍ଧା ଜିଲ୍ଲାପାଳ ନାରାୟଣ ଚନ୍ଦ୍ର ଜେନା, ବିଧାୟକ ବିକ୍ରମ କେଶରୀ ବର୍ମା, ବିଦ୍ୟାଳୟ ଓ ଗଣଶିକ୍ଷା ତଥା ସୂଚନା ଲୋକ ସଂପର୍କ ବିଭାଗର କମିଶନର ତଥା ଶାସନ ସଚିବ ସୁରେଶ ଚନ୍ଦ୍ର ପଟ୍ଟନାୟକ, ବି.ଡି.ଏ.ର ଉପାଧ୍ୟକ୍ଷ ନିକୁଞ୍ଜ ବିହାରୀ ଧଳ, ଡେପୁଟି ପୋଲିସ୍ କମିଶନର ଅମିତାଭ୍ ଠାକୁର, ଭୁବନେଶ୍ୱର ଏଡିଏମ୍ ଧୀରେନ୍ ପଟ୍ଟନାୟକ, ଭୁବନେଶ୍ୱର ଉପଜିଲ୍ଲାପାଳ ପି.କେ.ରାଉତରାୟ, ଖୋର୍ଦ୍ଧା ଜିଲ୍ଲା ଶିକ୍ଷା ମଣ୍ଡଳ ଅଧିକାରୀ ପ୍ରତି ପ୍ରତିଭା ଭୋଳ, ସୂଚନା ଓ ଲୋକ ସଂପର୍କ ବିଭାଗର ଉପନିର୍ଦ୍ଦେଶକ ତାଜ୍ଉଦ୍ଦିନ୍ ଅହମ୍ମଦ, ଜିଲ୍ଲା ସୂଚନା ଅଧିକାରୀ ନଗେନ୍ଦ୍ର ଯୋଗଦେଇ ଦିବସର ତାତ୍ପର୍ଯ୍ୟ ସଂପର୍କରେ ଆଲୋଚନା କରିଥିଲେ । ପ୍ରାରମ୍ଭରେ ରାଜଧାନୀ ପ୍ରତିଷ୍ଠା ଦିବସ ପାଳନ କମିଟିର ସାଧାରଣ ସଂପାଦକ ସନତ୍ ମିଶ୍ର ସ୍ୱାଗତ ଭାଷଣ ଦେଇଥିଲେ ।

## ହୀରାକୁଦ, ରେଙ୍ଗାଲି ଓ ସମଲର ବାସଚ୍ୟୁତ ପରିବାରଙ୍କୁ ଚଳିତ ବର୍ଷ ଡିସେମ୍ବର ସୁଦ୍ଧା ଥଇଥାନ କରାଯିବ

ହୀରାକୁଦ ବୁଡ଼ି ଅଞ୍ଚଳ, ରେଙ୍ଗାଲି ବନ୍ଧ, ସମଲ ବ୍ୟାରେଜର ବାସଚ୍ୟୁତ ପରିବାରକୁ ଚଳିତ ବର୍ଷ ଡିସେମ୍ବର ସୁଦ୍ଧା ଥଇଥାନ କରାଯିବା ପାଇଁ ନିଷ୍ପତ୍ତି ନିଆଯାଇଛି ବୋଲି ରାଜସ୍ୱ ବିପର୍ଯ୍ୟୟ ପରିଚାଳନା ମନ୍ତ୍ରୀ ଶ୍ରୀ ମନମୋହନ ସାମଲ ପ୍ରକାଶ କରିଛନ୍ତି । ଗତ ଅପ୍ରେଲ ୧୮ ତାରିଖ ଦିନ ତୃତୀୟ ମହଲା ସମ୍ମିଳନୀ କକ୍ଷରେ ଆୟୋଜିତ ଏକ ଉଚ୍ଚସ୍ତରୀୟ ବୈଠକରେ ମନ୍ତ୍ରୀ ଶ୍ରୀ ସାମଲ କହିଲେ ଏହି ସମସ୍ୟା ଦୀର୍ଘଦିନ ଧରି ହୋଇଥିବାରୁ ଏହାକୁ ପ୍ରାଥମିକତାର ସହ ସମାଧାନ କରାଯିବ । ରାଜସ୍ୱ, ଜଳସଂପଦ, ବିଦ୍ୟୁତ୍ ବିଭାଗ ଓ ଜଙ୍ଗଲ ବିଭାଗ ସହିତ ସମନ୍ୱୟ ରକ୍ଷା କରାଯାଇ ଆସନ୍ତା ୧୫ ଦିନ ମଧ୍ୟରେ ବାସଚ୍ୟୁତ ଲୋକଙ୍କର ସମସ୍ୟାର ସମାଧାନ କରାଯିବା ପାଇଁ ଉକ୍ତ ବୈଠକରେ ନିଷ୍ପତ୍ତି ନିଆଯାଇଛି । ଜିଲ୍ଲାପାଳମାନେ ମାସର ପ୍ରଥମ ସୋମବାର ଦିନ ବିସ୍ଥାପିତ ଲୋକମାନଙ୍କର ସମସ୍ୟାର ଅଭିଯୋଗର ଶୁଣାଣି କରିବେ । ଆସନ୍ତା ୬ ମାସ ମଧ୍ୟରେ ସେମାନେ ସବୁ ଅଭିଯୋଗର ଶୁଣାଣି ଶେଷ କରିବେ । ଜିଲ୍ଲାପାଳମାନଙ୍କର କ୍ଷମତା ପରିସରଭୁକ୍ତ ବିସ୍ଥାପିତମାନଙ୍କ ପାଇଁ ଆବଣ୍ଟନ ହୋଇଥିବା ଗ୍ରାମଗୁଡ଼ିକ ରାଜସ୍ୱ ଗ୍ରାମରେ ପରିଣତ କରିବା, ବିସ୍ଥାପିତ ଲୋକଙ୍କୁ ୪ ଡିସିମିଲି ଜମି ଯୋଗାଇ ଦିଆଯିବା ଉପରେ ନିଷ୍ପତ୍ତି ନିଆଯାଇଛି । ବିସ୍ଥାପିତ ଲୋକମାନେ ଦାବି କରିଥିବା ୧୦ ଡିସିମିଲି ଜାଗା ପାଇଁ ଏହି ବୈଠକରେ ବିଶେଷ ଭାବେ ଆଲୋଚନା କରାଯାଇ ଉକ୍ତ ଜାଗା ଯୋଗାଇ ଦେବା ଉପରେ ରାଜସ୍ୱ ବିଭାଗର ପ୍ରକ୍ରିୟା ଆରମ୍ଭ ହୋଇଛି ବୋଲି ମନ୍ତ୍ରୀ ଶ୍ରୀ ସାମଲ ପ୍ରକାଶ କରିଥିଲେ । ବିସ୍ଥାପିତମାନେ କ୍ଷତିପୂରଣ ପାଇଁ ୨୮(କ)ରେ ଆବେଦନ କଲେ ଉକ୍ତ କ୍ଷତିପୂରଣ ଆସନ୍ତା ୩ ମାସ ମଧ୍ୟରେ ପ୍ରଦାନ କରାଯିବ । ବିସ୍ଥାପିତମାନଙ୍କର ଥଇଥାନ ବାବଦରେ ବହୁଳ ଭାବରେ ପ୍ରସାର ପାଇଁ ଜାତୀୟ, ଆଞ୍ଚଳିକ ଖବରକାଗଜମାନଙ୍କରେ ବିଜ୍ଞାପନ ମାଧ୍ୟମରେ ପ୍ରକାଶ କରାଯିବା ପାଇଁ ନିଷ୍ପତ୍ତି ନିଆଯାଇଛି । ବିସ୍ଥାପିତ ଲୋକମାନଙ୍କୁ ଜମି ଲିଜ୍ ଆକାରରେ ପ୍ରଦାନ କରାଯିବାର କୌଣସି ପ୍ରତିବନ୍ଧକ ହେବ ନାହିଁ ବୋଲି ମନ୍ତ୍ରୀ ଶ୍ରୀ ସାମଲ ପ୍ରକାଶ କରିଥିଲେ । ଭୂମିହୀନମାନଙ୍କୁ ଜମିପଟ୍ଟା

ଖୁବ୍‌ଶୀଘ୍ର ପ୍ରଦାନ କରାଯିବ । ଜଙ୍ଗଲ ଜମିର ସୁରକ୍ଷା କରାଯାଇ ଅନୁସୂଚିତ ଜାତି, ଜନଜାତି, ବିସ୍ଥାପିତ ଲୋକମାନଙ୍କୁ ଥଇଥାନ କରାଯିବା ପାଇଁ ନିଷ୍ପତ୍ତି ନିଆଯାଇଛି । ସବୁ କାର୍ଯ୍ୟ ସମୟସୀମା ମଧ୍ୟରେ ଶେଷ କରାଯିବ ବୋଲି ମନ୍ତ୍ରୀ ଶ୍ରୀ ସାମଲ ପ୍ରକାଶ କରିଥିଲେ ।

ଉକ୍ତ ବୈଠକରେ ବୁଡ଼ି ଅଞ୍ଚଳ ସଂଗ୍ରାମ ସମିତି ଲଖନପୁର ପ୍ରତିନିଧି, ରେଙ୍ଗାଲି ବନ୍ଧ ଓ ସମଲ ବ୍ୟାରେଜ ବାସଚ୍ୟୁତ ସୁରକ୍ଷା ସମିତିର ପ୍ରତିନିଧିମାନେ ବିଭିନ୍ନ ସମସ୍ୟା ସମ୍ବନ୍ଧରେ ଆଲୋକପାତ କରିଥିଲେ । ବିଶେଷତଃ ହୀରାକୁଦ ଓ ରେଙ୍ଗାଲି ବନ୍ଧ ଦ୍ୱାରା ବାସଚ୍ୟୁତ ପରିବାରବର୍ଗଙ୍କ ବିଭିନ୍ନ ସମସ୍ୟା, ବାସଚ୍ୟୁତ ପରିବାରଙ୍କ ଗ୍ରାମକୁ ରାଜସ୍ୱ ଗ୍ରାମରେ ପରିଣତ କରିବା, ଜଳଭଣ୍ଡାର କାର୍ଯ୍ୟରେ ଆସୁନଥିବା ସଂପୃକ୍ତ ଗରିବ ବାସଚ୍ୟୁତ ଚାଷ କରି ଆସୁଥିବା ଜମିକୁ ଉକ୍ତ ବାସଚ୍ୟୁତ ପରିବାରଙ୍କୁ ପ୍ରଦାନ କରାଯିବା ଓ କ୍ଷତିପୂରଣ ପ୍ରଦାନ ସହ ବକେୟା କ୍ଷତିପୂରଣକୁ ରାଜ୍ୟ ସରକାରଙ୍କ ନିୟମ ଅନୁଯାୟୀ ପ୍ରଦାନ କରିବା, ବାସଚ୍ୟୁତ ପରିବାରମାନଙ୍କୁ ମୌଳିକ ସୁବିଧା ଯୋଗାଇ ଦେବା ଓ ମାଛମାରି ଜୀବିକା ନିର୍ବାହ କରୁଥିବା ମତ୍ସ୍ୟଜୀବୀଙ୍କ ଜୀବନ ଜୀବିକାର ସୁରକ୍ଷା ଆଦି ବିଭିନ୍ନ ଦାବି ଉପରେ ଉକ୍ତ ପ୍ରତିନିଧିମାନେ ଉପସ୍ଥାପନ କରିଥିଲେ ।

ଉକ୍ତ ବୈଠକରେ ଲୋକସଭା ସଦସ୍ୟ ଶ୍ରୀ ଧର୍ମେନ୍ଦ୍ର ପ୍ରଧାନ, ଝାରସୁଗୁଡ଼ା ବିଧାୟକ ଶ୍ରୀ କିଶୋର ମହାନ୍ତି, ତାଳଚେର ବିଧାୟକ ଶ୍ରୀ ମହେଶ ସାହୁ, ଜଳସେଚନ ବିଭାଗ ପ୍ରମୁଖ ଶାସନ ସଚିବ ଶ୍ରୀ ଅରବିନ୍ଦ ବେହେରା, ରାଜସ୍ୱ ବିଭାଗ ଶାସନ ସଚିବ ଶ୍ରୀ ଜି.ଭି.ଭି. ଶର୍ମା, ଉତ୍ତରାଞ୍ଚଳ ରାଜସ୍ୱ କମିଶନର ଶ୍ରୀ ମଧୁସୂଦନ ପାଢ଼ୀଙ୍କ ସମେତ ସୋନପୁର, ବରଗଡ଼, ସମ୍ବଲପୁର, ଝାରସୁଗୁଡ଼ା, ସୁନ୍ଦରଗଡ଼, ଦେବଗଡ଼ର ଜିଲ୍ଲାପାଳ ଓ ବିଭାଗୀୟ ଅଫିସରମାନେ ଉପସ୍ଥିତ ରହି ଆଲୋଚନାରେ ଅଂଶଗ୍ରହଣ କରିଥିଲେ ।

## ରେଶମ ଚାଷ ଯୋଗୁଁ ଆତ୍ମନିଯୁକ୍ତି ସୃଷ୍ଟି ହୋଇଛି : ମନ୍ତ୍ରୀ

ଗତ ଅପ୍ରେଲ ୨୪ ତାରିଖରେ ଜୟଦେବ ଭବନଠାରେ ରେଶମ ଚାଷ ସଂପର୍କିତ ଦୁଇଦିନିଆ ରାଜ୍ୟସ୍ତରୀୟ କର୍ମଶାଳା ରାଜ୍ୟ ବୟନ ତଥା ହସ୍ତତନ୍ତ ବିଭାଗ ମନ୍ତ୍ରୀ ଶ୍ରୀ ଗୋଲକବିହାରୀ ନାୟକଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଯାଇଛି । ଏହି ଅବସରରେ ମନ୍ତ୍ରୀ ଶ୍ରୀ ନାୟକ କହିଲେ ଯେ ରେଶମ ଚାଷ ଯୋଗୁଁ ଆତ୍ମନିଯୁକ୍ତିର ସୁଯୋଗ ସୃଷ୍ଟି ହୋଇପାରିଛି । ଆହୁରି ଅନେକ ଆତ୍ମନିଯୁକ୍ତି ସୃଷ୍ଟି କରାଯିବା ସହ ଏ ଦିଗରେ ଉତ୍ସାହ ବୃଦ୍ଧି କରିବା ଆବଶ୍ୟକ । ବିଶେଷକରି ଆଧୁନିକ କୌଶଳକୁ ବିନିଯୋଗ କରି ଏହାର ପ୍ରୟୋଗାତ୍ମକ ପାର୍ଶ୍ୱକୁ ଅଧିକ ସମୃଦ୍ଧ କରିବାକୁ ଦୃଷ୍ଟି ନିବେଶ କରିବା ପାଇଁ ଶ୍ରୀ ନାୟକ ମତପ୍ରକାଶ କରିଥିଲେ । ଆନ୍ତରିକତାର ସହ କାର୍ଯ୍ୟ କଲେ ଏହି ଚାଷରୁ ଯୁବପିଢ଼ି ନିଶ୍ଚିତ ରୂପେ ଲାଭବାନ ହୋଇପାରିବେ । ସେମାନେ ଆତ୍ମନିର୍ଭରଶୀଳ ହେବା ସହ ଆତ୍ମନିଯୁକ୍ତି କ୍ଷେତ୍ରରେ ଆଉ ବାଧାବିଘ୍ନର ସମ୍ମୁଖୀନ ହେବେ ନାହିଁ ବୋଲି ସେ ଦୃଢ଼ ଆଶା ପ୍ରକାଶ କରିଥିଲେ । ଏହା ସହିତ ରେଶମର ବିକ୍ରି ଚାହିଦା ବୃଦ୍ଧି ପାଇବା ପାଇଁ ଠାକୁର ଉପାସନା ସମୟରେ ପ୍ରତ୍ୟେକ ବ୍ୟକ୍ତି ରେଶମ ଲୁଗା ବ୍ୟବହାର ଉପରେ ସେ ଗୁରୁତ୍ୱାରୋପ କରିଥିଲେ ।

ଏହି ଉଦ୍‌ଘାଟନୀ ଉତ୍ସବରେ ବିଭାଗୀୟ ପ୍ରମୁଖ ଶାସନ ସଚିବ ଶ୍ରୀମତୀ ଅନୀତା ଅଗ୍ନିହୋତ୍ରୀ ଯୋଗ ଦେଇ କହିଲେ ଯେ ଗତ ଦୁଇବର୍ଷ ମଧ୍ୟରେ ଟସର୍, ଏଣ୍ଡି, ମଲବେରୀ (ତୁତ) ଚାଷରେ ରାଜ୍ୟରେ ଅଧିକ ଉନ୍ନତି ଘଟିଛି । ଅନେକ ଚାଷୀ ଏଥିପାଇଁ ଆଗ୍ରହ ପ୍ରକାଶ କରିଛନ୍ତି ଓ ବିଭାଗ ପକ୍ଷରୁ ବୈଷୟିକ ସ୍ତରରେ ରେଶମ ଚାଷ ସଂପର୍କିତ ବିଭିନ୍ନ ସହାୟତା ଯୋଗାଇ ଦିଆଯାଇଛି । ଏହି ବୈଷୟିକ ଜ୍ଞାନ ଯୋଗାଇ ଦେଉଥିବା କର୍ମଚାରୀମାନଙ୍କ କ୍ଷେତ୍ର ସ୍ତରରେ ମୌଳିକ ଆବଶ୍ୟକତାକୁ ପ୍ରାଥମିକତା ଦିଆଯିବା ଉପରେ ସେ ଗୁରୁତ୍ୱରାରୋପ କରିଥିଲେ । ଏକାଦଶ ଯୋଜନାରେ ବର୍ତ୍ତମାନର ଧାର୍ଯ୍ୟଲକ୍ଷ୍ୟ ଦ୍ୱିଗୁଣିତ କରିବା ପାଇଁ ଚିନ୍ତା କରାଯାଉଛି ବୋଲି ପ୍ରମୁଖ ଶାସନ ସଚିବ ପ୍ରକାଶ କରିଥିଲେ । ପୂର୍ବତନ ରେଶମ ଚାଷ ଉପଦେଷ୍ଟା ଶ୍ରୀ ସି.ଭି.ଜେ. ରାଓ ଏହି ଅବସରରେ କହିଲେ ଯେ ଉତ୍ତମ ରେଶମ ପ୍ରସ୍ତୁତ ପାଇଁ ଉନ୍ନତଧରଣର ଯାନ ଦରକାର । ଏହା ହୋଇପାରିଲେ ରେଶମର ଚାହିଦା ବୃଦ୍ଧି ପାଇପାରିବ । ତେଣୁ ଉନ୍ନତ ବୈଷୟିକ ଜ୍ଞାନକୌଶଳର ଆବଶ୍ୟକତା ରହିଛି । ଏହା ଏଭଳି କର୍ମଶାଳାରେ ହେଉଥିବା ଦ୍ୱିପାକ୍ଷିକ ଆଲୋଚନା ମାଧ୍ୟମରେ ସମ୍ଭବ ହୋଇପାରିବ ବୋଲି ସେ ମତପ୍ରକାଶ କରିଥିଲେ ।

ଏହି ସଭାରେ ସ୍ୱାଗତ ଭାଷଣ ଦେବା ଅବସରରେ ବୟନ ଓ ହସ୍ତତନ୍ତ ନିର୍ଦ୍ଦେଶକ ଶ୍ରୀ ଲକ୍ଷ୍ମୀନାରାୟଣ ନାୟକ କହିଲେ ଯେ ରାଜ୍ୟର ୧୫ ହଜାର ପାରମ୍ପରିକ ରେଶମ ଚାଷୀ ପରିବାରର ଏକ ଲକ୍ଷ ଲୋକ ଏହି ଚାଷରେ ପ୍ରତ୍ୟକ୍ଷ ଭାବେ ଅନ୍ତର୍ଭୁକ୍ତ । ଏଥିସହିତ ରିଲର, ସ୍ପିନର ତଥା ବୁଣାକାର ଭଳି ପରୋକ୍ଷ ଭାବେ ଏହି ବ୍ୟବସ୍ଥାରେ ସମାନ ସଂଖ୍ୟକ ଲୋକ ସଂପୃକ୍ତ ଅଛନ୍ତି । ରାଜ୍ୟରେ ପ୍ରାୟ ୧୨ ହଜାର ହେକ୍ଟର ଜମିରେ ରେଶମ ଚାଷ କରାଯାଉଥିବା ବେଳେ ଆଗାମୀ ୫ ବର୍ଷ ମଧ୍ୟରେ ଏହାକୁ ଦ୍ୱିଗୁଣିତ କରିବା ଲକ୍ଷ୍ୟ ରଖାଯାଇଛି ବୋଲି ନିର୍ଦ୍ଦେଶକ ଶ୍ରୀ ନାୟକ କହିଥିଲେ ।

ଏହି କର୍ମଶାଳା ମାଧ୍ୟମରେ ସିଲ୍କ ଗବେଷଣା ପ୍ରସ୍ତୁତି, ବ୍ୟବସାୟ ଓ ବୈଷୟିକ ଜ୍ଞାନ ସମ୍ବନ୍ଧୀୟ ଭାବର ଆଦାନପ୍ରଦାନ ଲାଗି ଏକ ସୁଯୋଗ ମିଳିପାରିବ ବୋଲି ସେରିଫେଡ଼ର ଅଧ୍ୟକ୍ଷ ଶ୍ରୀ ସଂଜୀବ ମହାନ୍ତି ମତ ପ୍ରକାଶ କରିଥିଲେ । ଟସର ଚାଷର କୌଳିକ ବୃତ୍ତିକୁ ଯୁବପିଢ଼ି ଆଦରର ସହ ଗ୍ରହଣ କରିଥିବାରୁ ସେ ଆନନ୍ଦ ପ୍ରକାଶ କରିଥିଲେ । ଶେଷରେ ରେଶମ ଚାଷ ଉପନିର୍ଦ୍ଦେଶକ ଶ୍ରୀ ଏସ୍.ଏନ୍. ଦାଶ ଧନ୍ୟବାଦ ଅର୍ପଣ କରିଥିଲେ ।

ବୟନ ଓ ହସ୍ତତନ୍ତ ନିର୍ଦ୍ଦେଶାଳୟ ପକ୍ଷରୁ ଆୟୋଜିତ ଏହି କର୍ମଶାଳାରେ କେନ୍ଦ୍ରୀୟ ସିଲ୍କ ବୋର୍ଡ୍, ରାଜ୍ୟ ରେଶମ ବିଭାଗ କର୍ମଚାରୀ, ରେଶମ ଚାଷୀ, ସ୍ୱେଚ୍ଛାସେବୀ ଅନୁଷ୍ଠାନର ପ୍ରତିନିଧିମାନେ ଯୋଗ ଦେଇଥିଲେ । ଏହି ଅବସରରେ 'ଟେକ୍ନିକାଲ କମ୍ପେଡ଼ିୟମ' ପୁସ୍ତକ ଓ 'ଜିଆଚାଷ ଲାଭ ବହୁତ' ପ୍ରଚାରପତ୍ରର ଶୁଭ ଉନ୍ମୋଚନ କରାଯାଇଥିଲା ।

## ଚଳିତ ବର୍ଷ ଆଉ ୧୪୪ଟି ନୂତନ ତହସିଲ ଅଫିସ୍ ଖୋଲାଯିବ

ଗତ ଅପ୍ରେଲ ୧୯ ତାରିଖ ଦିନ ଅର୍ଥ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡାଇଙ୍କ ଅଧ୍ୟକ୍ଷତାରେ ପ୍ରତ୍ୟେକ ବ୍ଲକ୍‌ରେ ତହସିଲ ଅଫିସ୍ ଖୋଲାଯିବା ସଂପର୍କରେ ଏକ ଉଚ୍ଚସ୍ତରୀୟ ବୈଠକ ଅନୁଷ୍ଠିତ ହୋଇଥିଲା । ଏହି ବୈଠକରେ ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା ଏବଂ ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ମନ୍ତ୍ରୀ ଶ୍ରୀ ମନମୋହନ ସାମଲ ଉପସ୍ଥିତ ଥିଲେ । ଏହି ବୈଠକରେ ଅର୍ଥ ମନ୍ତ୍ରୀ ଶ୍ରୀ ଘଡ଼ାଇ କହିଲେ ଯେ ପ୍ରତ୍ୟେକ ବ୍ଲକ୍‌ରେ ତହସିଲ ଅଫିସ୍ ଖୋଲାଯିବା ପାଇଁ ସରକାର ସ୍ଥିର କରିଛନ୍ତି । ଏହି ତହସିଲ ଅଫିସ୍‌ଗୁଡ଼ିକ ପ୍ରାୟତଃ ବ୍ଲକ୍ ଅଫିସ୍ ନିକଟରେ ଖୋଲାଯିବାର ବ୍ୟବସ୍ଥା କରାଯାଉଛି । ଏହାଦ୍ୱାରା ଜନସାଧାରଣ ବ୍ଲକ୍ ଓ ତହସିଲ କାର୍ଯ୍ୟ କମ୍ ସମୟ ମଧ୍ୟରେ କରିପାରିବେ ଓ ସେମାନଙ୍କୁ ବେଶୀ ଖର୍ଚ୍ଚାନ୍ତ ହେବାକୁ ପଡ଼ିବ ନାହିଁ । ରାଜ୍ୟରେ ପୂର୍ବରୁ ୩୧୪ ଗୋଟି ବ୍ଲକ୍ ମଧ୍ୟରୁ ୧୭୦ ଗୋଟି ବ୍ଲକ୍‌ରେ ତହସିଲ ଅଫିସ୍ କାର୍ଯ୍ୟ କରୁଥିଲା । ଚଳିତ ବର୍ଷ ଆଉ ୧୪୪ ଗୋଟି ନୂଆ ତହସିଲ ଅଫିସ୍ ଖୋଲାଯିବା ପାଇଁ ସ୍ଥିର କରାଯାଇଛି ।

ବର୍ତ୍ତମାନ ସୁଦ୍ଧା ୬୦ ଗୋଟି ତହସିଲ ଅଫିସ୍ ଖୋଲାଯିବା ପାଇଁ ସରକାରୀ ନିର୍ଦ୍ଦେଶନାମା ପ୍ରକାଶ ପାଇ ସାରିଛି । ସେଥିମଧ୍ୟରୁ ପୂର୍ବରୁ ୪୫ ଗୋଟି ବ୍ଲକ୍‌ରେ ଥିବା ଅତିରିକ୍ତ ତହସିଲଦାର ଅଫିସ୍‌କୁ ତହସିଲ ଅଫିସ୍ କରାଯିବା ସହ ୫ ଗୋଟି ନୂଆ ତହସିଲ ଅଫିସ୍ ଖୋଲାଯାଇଛି ଓ ଅବଶିଷ୍ଟ ୧୦ ଗୋଟି ନୂଆ ତହସିଲ୍ ଅଫିସ୍ ଶୀଘ୍ର ଖୋଲାଯିବ । ଏତଦ୍‌ବ୍ୟତୀତ ଚଳିତବର୍ଷ ଅବଶିଷ୍ଟ ୮୪ଟି ବ୍ଲକ୍‌ରେ ତହସିଲ ଅଫିସ୍ ଖୋଲାଯିବା ପାଇଁ ସ୍ଥିର କରାଯାଇଛି । ପ୍ରତ୍ୟେକ ତହସିଲ ଅଫିସ୍‌ରେ ଜଣେ ମୁଖ୍ୟ କିରାନୀ (ହେଡ୍‌କ୍ଲର୍କ), ୪ ଜଣ ବରିଷ୍ଠ କିରାଣୀ, ୩ ଜଣ କନିଷ୍ଠ କିରାଣୀ ଓ ୫ ଜଣ ଚତୁର୍ଥ ଶ୍ରେଣୀ କର୍ମଚାରୀଙ୍କୁ ନିଯୁକ୍ତି ଦିଆଯିବାର ବ୍ୟବସ୍ଥା କରାଯାଇଛି । ବନ୍ଦୋବସ୍ତ ଓ ଚକବନ୍ଦି ଅଫିସ୍‌ରେ ଜବ୍ କଣ୍ଟ୍ରାକ୍ଟ ଭାବେ ୫୬୧୨ ଜଣ କର୍ମଚାରୀ କାର୍ଯ୍ୟ କରୁଛନ୍ତି । ସେହି କର୍ମଚାରୀମାନଙ୍କୁ ନୂଆ ତହସିଲ ଅଫିସ୍‌ରେ ନିଯୁକ୍ତି ଦେବା ପାଇଁ ସ୍ଥିର କରାଯାଇଛି ଓ ଆବଶ୍ୟକ ହେଲେ ନୂଆ ନିଯୁକ୍ତି ଦିଆଯିବ ବୋଲି ରାଜସ୍ୱ ଓ ବିପର୍ଯ୍ୟୟ ବିଭାଗ ମନ୍ତ୍ରୀ ଶ୍ରୀ ସାମଲ କହିଥିଲେ ।

୧୪୪ ଗୋଟି ନୂଆ ତହସିଲ ଅଫିସ୍ ଖୋଲିବା ପାଇଁ ଅର୍ଥ ବିଭାଗ ମୋଟ ୧୩୯ କୋଟି ଟଙ୍କା ଯୋଗାଇ ଦେବେ । ଚଳିତ ବର୍ଷ ବଜେଟ୍‌ରେ ଏଥିପାଇଁ ୬୦ କୋଟି ଟଙ୍କାର ବ୍ୟବସ୍ଥା କରାଯାଇଛି । ପ୍ରତ୍ୟେକ ନୂଆ ତହସିଲ ଘର ନିର୍ମାଣ ପାଇଁ ୮୦ ଲକ୍ଷ ଟଙ୍କା ଦେବା ପାଇଁ ସ୍ଥିର କରାଯାଇଛି ବୋଲି ଅର୍ଥ ବିଭାଗ ପ୍ରମୁଖ ଶାସନ ସଚିବ ଶ୍ରୀ ରବିନାରାୟଣ ସେନାପତି କହିଛନ୍ତି । ଏହି ବୈଠକରେ ଅନ୍ୟମାନଙ୍କ ମଧ୍ୟରେ ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା ବିଭାଗର ଶାସନ ସଚିବ ଶ୍ରୀ ଜି.ଭି.ଭି. ଶର୍ମା, ଅର୍ଥ ବିଭାଗର ଯୁଗ୍ମ ଶାସନ ସଚିବ ଶ୍ରୀ ବିକାଶ ଚନ୍ଦ୍ର ମହାପାତ୍ର ଓ ଅନ୍ୟାନ୍ୟ ବରିଷ୍ଠ ଅଧିକାରୀମାନେ ଉପସ୍ଥିତ ଥିଲେ ।

## ନୂତନ ଶୀତତାପ ନିୟନ୍ତ୍ରିତ ବସ୍ ଭୁବନେଶ୍ୱରରୁ ଭବାନୀପାଟଣା ଓ କଟକରୁ ବାଲିଗୁଡ଼ା ଯାଏଁ ଚାଲିବ

ଓଡ଼ିଶା ରାଜ୍ୟ ପରିବହନ ନିଗମ (ଓ.ଏସ୍.ଆର୍.ଟି.ସି.) ପକ୍ଷରୁ ୨୦୦୭ ମସିହା ଫେବୃଆରୀ ମାସରେ ୨୯୨.୧୫ ଲକ୍ଷ ଟଙ୍କା ଆଦାୟ କରାଯାଇଥିବା ବେଳେ ୨୦୦୮ ମସିହା ଫେବୃଆରୀ ମାସରେ ୩୩୫.୮୦ ଲକ୍ଷ ଟଙ୍କା ଆଦାୟ କରାଯାଇଛି । ଏହାବ୍ୟତୀତ ତା.୨୫.୦୩.୨୦୦୮ରିଖ ସୁଦ୍ଧା କଟକ ବାଦାମବାଡ଼ି ବସ୍‌ଷ୍ଟାଣ୍ଡରେ ରହଣି ମହାସୁଲ ବାବଦରେ ୨.୭୦ ଲକ୍ଷ ଟଙ୍କା ଆଦାୟ କରାଯାଇଛି ।

ନିଗମ ପକ୍ଷରୁ ୫ ଗୋଟି ନୂତନ ଚେସିସ୍ କିଣାଯାଇଛି ଏବଂ ପୂର୍ବରୁ କିଣାଯାଇଥିବା ଚେସିସ୍ ମଧ୍ୟରୁ ୬ ଗୋଟିର ବଡ଼ି ବିଲ୍ଡ଼ିଂ କାର୍ଯ୍ୟ ଶେଷ ହୋଇଛି । ସେହିପରି ଶୀତତାପ ନିୟନ୍ତ୍ରିତ ବସ୍ ସେବା ଭୁବନେଶ୍ୱରଠାରୁ ଭବାନୀପାଟଣା ଭାୟା ଅନୁଗୁଳ ଏବଂ ଦ୍ରୁତଗାମୀ ବସ୍ ସେବା କଟକଠାରୁ

ବାଲିଗୁଡ଼ା ପର୍ଯ୍ୟନ୍ତ ନୂତନ ଭାବେ ପ୍ରଚଳନ କରାଯାଇଛି । ଭୁବନେଶ୍ୱର-ରାଞ୍ଚି 'ଗରିବ ରଥ' (ସପ୍ତାହରେ ତିନିଥର) ଦ୍ରୁତଗାମୀ ରେଳ ୨୦୦୮ ମାର୍ଚ୍ଚ ପ୍ରଥମ ସପ୍ତାହରୁ ଚଳାଚଳ କରୁଥିବା ବାଣିଜ୍ୟ ଓ ପରିବହନ ବିଭାଗ ସୂତ୍ରରୁ ପ୍ରକାଶ ।

## ଆତ୍ମନିଯୁକ୍ତି ଯୋଜନା ସଂପର୍କରେ ମୁଖ୍ୟମନ୍ତ୍ରୀଙ୍କ ସମୀକ୍ଷା
## ଗତ ତିନିବର୍ଷ ମଧ୍ୟରେ ତିନିଲକ୍ଷରୁ ଅଧିକ ଲୋକଙ୍କ ପାଇଁ ନିଯୁକ୍ତି ସୁଯୋଗ ମିଳିବ

ଗତ ତିନିବର୍ଷ ମଧ୍ୟରେ ରାଜ୍ୟର ତିନିଲକ୍ଷରୁ ଅଧିକ ଯୁବକ ଯୁବତୀଙ୍କ ପାଇଁ ବିଭିନ୍ନ ଆତ୍ମନିଯୁକ୍ତି ଯୋଜନାରେ ନିଯୁକ୍ତିର ସୁଯୋଗ ସୃଷ୍ଟି କରାଯାଇଛି । ମୁଖ୍ୟତଃ ସେବା କ୍ଷେତ୍ରରେ ନିଯୁକ୍ତି ସୁଯୋଗର ସଂପ୍ରସାରଣ ଘଟିଛି । ଗତ ମଇ ୨ ତାରିଖରେ ସଚିବାଳୟଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ବିଭିନ୍ନ ଆତ୍ମନିଯୁକ୍ତି ଯୋଜନାର ସଫଳତା ସଂପର୍କରେ ଏକ ଉଚ୍ଚସ୍ତରୀୟ ବୈଠକରେ ସମୀକ୍ଷା କରିଥିଲେ । ସମୀକ୍ଷାରୁ ଜଣାଯାଇଛି ଯେ ୨୦୦୬-୦୭ ବର୍ଷରେ ୮୪,୮୨୭ ଜଣ ବ୍ୟକ୍ତିଙ୍କୁ ଆତ୍ମନିଯୁକ୍ତି ପାଇଁ ବ୍ୟାଙ୍କ୍ ଋଣ ସହାୟତା ଯୋଗାଇ ଦିଆଯାଇଥିବା ବେଳେ ୨୦୦୭-୦୮ରେ ୨,୨୮,୮୦୦ ବ୍ୟକ୍ତିଙ୍କ ପାଇଁ ବ୍ୟାଙ୍କ୍ ଋଣ ସହାୟତାର ବ୍ୟବସ୍ଥା କରାଯାଇଥିଲା । ସେହିପରି ବୈଷୟିକ ଶିକ୍ଷା ଓ ତାଲିମ୍ ନିର୍ଦ୍ଦେଶକଙ୍କ ଜରିଆରେ ୨୦୦୫-୦୬ରେ ୪୫୧୬ ଜଣଙ୍କୁ ତାଲିମ୍ ଦିଆଯାଇଥିବା ବେଳେ ୨୦୦୬-୦୭ରେ ୭,୭୦୦ ଜଣଙ୍କୁ ଏବଂ ୨୦୦୭-୦୮ରେ ୧୪,୮୬୭ ଜଣଙ୍କୁ ପ୍ରଶିକ୍ଷଣ ଦିଆଯାଇଥିଲା ।

ରାଜ୍ୟର ଯୁବକ ଯୁବତୀମାନଙ୍କ ପାଇଁ ବିଭିନ୍ନ ଦେଶୀବିଦେଶୀ ପ୍ରତିଷ୍ଠାନମାନଙ୍କରେ ନିଯୁକ୍ତିର ସମ୍ଭାବନା ବଢ଼ାଇବା ପାଇଁ ସେମାନଙ୍କୁ ଆବଶ୍ୟକ ତାଲିମ୍ ଦିଆଯିବା ଉପରେ ମୁଖ୍ୟମନ୍ତ୍ରୀ ଗୁରୁତ୍ୱାରୋପ କରିଥିଲେ । ଏଥିରେ ବିଭିନ୍ନ ବିଦେଶୀ ଭାଷା ଏବଂ ସୂଚନା ପ୍ରଯୁକ୍ତିବିଦ୍ୟା ଉପରେ ଛାତ୍ରଛାତ୍ରୀମାନଙ୍କ ଦକ୍ଷତା ବଢ଼ାଇବା ଉପରେ ବୈଠକରେ ଗୁରୁତ୍ୱାରୋପ କରାଯାଇଥିଲା । ଯୋଗ୍ୟ ପ୍ରଶିକ୍ଷକମାନଙ୍କ ଦ୍ୱାରା ଏହି ତାଲିମ୍ କାର୍ଯ୍ୟକ୍ରମ ଆରମ୍ଭ କରିବା ପାଇଁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଥିଲେ । ରାଜ୍ୟରେ ପରିବେଶ ପର୍ଯ୍ୟଟନ କ୍ଷେତ୍ରରେ ବିକାଶର ବିପୁଳ ସମ୍ଭାବନା ଥିବାରୁ ଚିଲିକା ଓ ଭିତରକନିକା ପରି ସ୍ଥାନମାନଙ୍କରେ ପର୍ଯ୍ୟଟକମାନଙ୍କୁ ସହାୟତା କରିବା ପାଇଁ ସ୍ଥାନୀୟ ଲୋକମାନଙ୍କୁ ଗାଇଡ୍ ଭାବରେ ତାଲିମ ଦେବା ଉପରେ ମୁଖ୍ୟମନ୍ତ୍ରୀ ଗୁରୁତ୍ୱାରୋପ କରିଥିଲେ ।

ଓଡ଼ିଶା ବାହାରେ ରହି କାମ କରୁଥିବା ପ୍ରବାସୀ ଓଡ଼ିଆମାନଙ୍କୁ ସହାୟତା କରିବା ପାଇଁ ସୁରଟ, ରାୟପୁର ଆଦି ସ୍ଥାନମାନଙ୍କରେ 'ମୋ' ଘର ମୋ' ପରିବାର' ନାମରେ ସହାୟତା କେନ୍ଦ୍ର ଖୋଲାଯିବା ପାଇଁ ବୈଠକରେ ସ୍ଥିର କରାଯାଇଥିଲା ।

ଉଗ୍ରବାଦ ପ୍ରଭାବିତ ଅଞ୍ଚଳମାନଙ୍କରେ ସେ ନୌବାହିନୀରେ ଭର୍ତ୍ତି ନିମନ୍ତେ ହେଉଥିବା ପ୍ରାକ୍‌ଚୟନ ପ୍ରଶିକ୍ଷଣକୁ ଅଧିକ ବ୍ୟାପକ କରିବା ପାଇଁ ବୈଠକରେ ସ୍ଥିର କରାଯାଇଥିଲା ।

ଏହି ସମୀକ୍ଷା ବୈଠକରେ ମୁଖ୍ୟ ଶାସନ ସଚିବ ଶ୍ରୀ ଅଜିତ କୁମାର ତ୍ରିପାଠୀଙ୍କ ସମେତ ବରିଷ୍ଠ ପଦାଧିକାରୀମାନେ ଉପସ୍ଥିତ ଥିଲେ ।

## ଜାତୀୟ ଗ୍ରାମୀଣ ନିଶ୍ଚିତ ନିଯୁକ୍ତି ଯୋଜନାରେ ଶ୍ରମିକଙ୍କୁ ଅଧିକ ଖଟଣୀ ବିପଜ୍ଜନକ : ମୁଖ୍ୟମନ୍ତ୍ରୀ

ଜାତୀୟ ଗ୍ରାମୀଣ ନିଶ୍ଚିତ ନିଯୁକ୍ତି ଯୋଜନା ଅନୁଯାୟୀ ପୂର୍ବରୁ ଜଣେ ଅଣକୁଶଳୀ ଶ୍ରମିକ ସାତଘଣ୍ଟା କାମ କଲେ ସର୍ବନିମ୍ନ ମଜୁରି ପାଉଥିଲା । ଇତିମଧ୍ୟରେ ଭାରତ ସରକାର ଏହି ନିୟମ ବଦଳାଇ ଦେଇଛନ୍ତି । ନୂଆ ନିୟମ ଫଳରେ ସମାନ ମଜୁରି ପାଇଁ ଜଣେ ଅଣକୁଶଳୀ ଶ୍ରମିକକୁ ନଅ ଘଣ୍ଟା ପରିଶ୍ରମ କରିବାକୁ ପଡ଼ିବ । ନଅ ଘଣ୍ଟା ବ୍ୟତୀତ ମଝିରେ ବିରତିକୁ ମିଶାଇଲେ ଜଣେ ଶ୍ରମିକକୁ ବାର ଘଣ୍ଟା ପାଇଁ ପରିଶ୍ରମ କରିବାକୁ ପଡ଼ିପାରେ । ଜାତୀୟ ଗ୍ରାମୀଣ ନିଶ୍ଚିତ ନିଯୁକ୍ତି ଯୋଜନାରେ ଶାରୀରିକ ଶ୍ରମ ଉପରେ ଗୁରୁତ୍ୱ ଦିଆଯାଉଥିବାରୁ ଦୀର୍ଘ ସମୟ ଧରି କାମ କରିବା ଶ୍ରମିକମାନଙ୍କ ପାଇଁ କ୍ଷତିକାରକ । ବିଶେଷତଃ ଖରାଦିନେ ଅତ୍ୟଧିକ ଗ୍ରୀଷ୍ମପ୍ରବାହ ସମୟରେ ଏଭଳି ଦୀର୍ଘ ସମୟ କାମ କରିବା ବିପଜ୍ଜନକ ହୋଇପାରେ ।

ଏହି ପରିପ୍ରେକ୍ଷୀରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଗତ ଅପ୍ରେଲ ୨୯ ତାରିଖରେ କେନ୍ଦ୍ର ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଡଃ ରଘୁବଂଶ ପ୍ରସାଦ ସିଂଙ୍କ ନିକଟକୁ ପତ୍ର ଲେଖି ନୂତନ କାର୍ଯ୍ୟ ନିର୍ଘଣ୍ଟ ବ୍ୟବସ୍ଥାର ସଂଶୋଧନ କରିବା ସହିତ ଶ୍ରମିକମାନଙ୍କ ସ୍ୱାର୍ଥକୁ ଦୃଷ୍ଟିରେ ରଖି ପୂର୍ବ ବ୍ୟବସ୍ଥା ଫେରାଇ ଆଣିବା ପାଇଁ ଦୃଢ଼ ଦାବୀ କରିଛନ୍ତି ।

# ପ୍ରତି ଗାଁରେ ଜଳସେଚନ ଉତ୍ସର ବିକାଶ କରାଯିବ - ଜିଲ୍ଲାପାଳମାନଙ୍କ ସହିତ ମୁଖ୍ୟମନ୍ତ୍ରୀଙ୍କ ଭିଡ଼ିଓ-ଆଲୋଚନା

ରାଜ୍ୟରେ ଜଳସେଚନ ସୁବିଧାର ପ୍ରସାର ନିମନ୍ତେ ରାଜ୍ୟ ସରକାର ପ୍ରତି ରାଜସ୍ୱ ଗ୍ରାମରେ ଗୋଟିଏ ଲେଖାଏଁ ପୋଖରୀ ଖୋଳିବା ନିମନ୍ତେ ନିଷ୍ପତ୍ତି ଗ୍ରହଣ କରିଛନ୍ତି । ଗତ ମଇ ୨ ତାରିଖରେ ସଚିବାଳୟଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଭିଡ଼ିଓ କନ୍‌ଫେରେନ୍ସିଂ ମାଧ୍ୟମରେ ତିରିଶଟି ଜିଲ୍ଲାର ଜିଲ୍ଲାପାଳମାନଙ୍କ ସହିତ ଏହି ଯୋଜନାର କାର୍ଯ୍ୟକାରିତା ସଂପର୍କରେ ଆଲୋଚନା କରିଥିଲେ ।

ମୁଖ୍ୟମନ୍ତ୍ରୀ କହିଥିଲେ ଯେ, ଚାଷଜମିକୁ ପାଣି ଯୋଗାଇବା ଉପରେ ରାଜ୍ୟ ସରକାର ସର୍ବାଧିକ ପ୍ରାଥମିକତା ଦେଉଛନ୍ତି । ତେଣୁ ରାଜ୍ୟରେ ଜଳସେଚନ ସୁବିଧାର ବିକାଶ ପାଇଁ ରାଜ୍ୟ ସରକାର ଚଳିତ ବର୍ଷକୁ ଜଳସେଚନ ବର୍ଷ ଭାବରେ ପାଳନ କରୁଛନ୍ତି । ଜଳସେଚନ ସୁବିଧାର ପ୍ରସାର ଲକ୍ଷ୍ୟ ନେଇ ପ୍ରତି ରାଜସ୍ୱ ଗ୍ରାମରେ ଗୋଟିଏ ଲେଖାଏଁ ପୋଖରୀ ଖୋଳିବା ପାଇଁ ସରକାର ସ୍ଥିର କରିଛନ୍ତି । ପାହାଡ଼ିଆ ଅଞ୍ଚଳରେ ଯେଉଁଠାରେ ପୋଖରୀ ଖୋଳାଯାଇ ପାରିବ ନାହିଁ ସେଠାରେ ଜଳଅମଳ ପ୍ରକଳ୍ପ ଆଦି ନିର୍ମାଣ କରାଯାଇ ପାରିବ ବୋଲି ଶ୍ରୀ ପଟ୍ଟନାୟକ କହିଥିଲେ । ପ୍ରତି ରାଜସ୍ୱ ଗାଁରେ ପୋଖରୀ ଖୋଳାଯିବା ବା ଆଗରୁ ରହିଥିବା ପୁରୁଣା ପୋଖରୀ ପୁନରୁଦ୍ଧାର ଦ୍ୱାରା ଗାଁରେ ରହୁଥିବା ଗରିବ ଲୋକମାନେ ନିଜ ଗାଁରେ କାମ ପାଇଁ ପାରିବେ ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ । କେ.ବି.କେ. ଅଞ୍ଚଳ ଏବଂ ଆଦିବାସୀ ଅଞ୍ଚଳରେ ଏହି ଯୋଜନାର କାର୍ଯ୍ୟକାରିତା ଉପରେ ମୁଖ୍ୟମନ୍ତ୍ରୀ ଗୁରୁତ୍ୱ ଦେଇଥିଲେ । ଜଳସେଚନ କାର୍ଯ୍ୟକ୍ରମର ଗୁରୁତ୍ୱ ଦୃଷ୍ଟିରୁ ପୋଖରୀ କାର୍ଯ୍ୟକ୍ରମର ଅଗ୍ରଗତି ସଂପର୍କରେ ଜିଲ୍ଲାପାଳମାନେ ଦୈନିକ ତଦାରଖ କରିବା ପାଇଁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଥିଲେ ।

ଗରିବ ଲୋକଙ୍କୁ ଦୁରାରୋଗ୍ୟ ବ୍ୟାଧିର ଚିକିତ୍ସା ପାଇଁ ସହାୟତା ଯୋଗାଣ କାର୍ଯ୍ୟକ୍ରମକୁ ବ୍ୟାପକ କରିବା ନିମନ୍ତେ ରାଜ୍ୟ ସରକାର ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠି ଜରିଆରେ ସହାୟତାର ବିକେନ୍ଦ୍ରୀକରଣ କରିଛନ୍ତି । ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିରୁ ସହାୟତା ଯୋଗାଇବା ପାଇଁ ଜିଲ୍ଲାପାଳମାନଙ୍କୁ ମଧ୍ୟ କ୍ଷମତା ଦିଆଯାଇଛି । ତେଣୁ ଏହି ସହାୟତା ଯେପରି ଗରିବ ଲୋକମାନେ ଠିକ୍ ସମୟରେ ପାଇ ପାରିବେ ସେଥିପ୍ରତି ଦୃଷ୍ଟି ଦେବା ପାଇଁ ମୁଖ୍ୟମନ୍ତ୍ରୀ ଜିଲ୍ଲାପାଳମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ପ୍ରତି ସପ୍ତାହରେ ଏ ସଂପର୍କରେ ସମୀକ୍ଷା କରିବା ପାଇଁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଥିଲେ ।

ସେହିପରି ଜିଲ୍ଲାମାନଙ୍କରେ ଜନସାଧାରଣଙ୍କ ଆପତ୍ତି ଅଭିଯୋଗର ଶୁଣାଣି ଏବଂ ଏହା ଉପରେ କାର୍ଯ୍ୟାନୁଷ୍ଠାନ ପ୍ରତି ସ୍ୱତନ୍ତ୍ର ଦୃଷ୍ଟି ଦେବା ପାଇଁ ମୁଖ୍ୟମନ୍ତ୍ରୀ ଜିଲ୍ଲାପାଳମାନଙ୍କୁ ପରାମର୍ଶ ଦେଇଥିଲେ । ଅନ୍ୟାନ୍ୟ ବିଷୟମାନଙ୍କ ମଧ୍ୟରେ ବିଜୁ ଗ୍ରାମଜ୍ୟୋତି ଯୋଜନା ଓ ପିଇବା ପାଣି ଯୋଗାଣ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବା ସହିତ ଅଂଶୁଘାତର ପ୍ରତିକାର ପାଇଁ ପ୍ରତିଷେଧକମୂଳକ ପଦକ୍ଷେପ ଉପରେ ମୁଖ୍ୟମନ୍ତ୍ରୀ ଗୁରୁତ୍ୱାରୋପ କରିଥିଲେ ।

ଏହି ଭିଡ଼ିଓ କନଫରେନ୍ସରେ ପଞ୍ଚାୟତିରାଜ ମନ୍ତ୍ରୀ ଶ୍ରୀ ରଘୁନାଥ ମହାନ୍ତି କୃଷି ଉତ୍ପାଦନ କମିଶନର ଶ୍ରୀ ସତ୍ୟପ୍ରକାଶ ନନ୍ଦ, ମୁଖ୍ୟମନ୍ତ୍ରୀଙ୍କ ପ୍ରମୁଖ ସଚିବ ଶ୍ରୀ ବିଜୟ କୁମାର ପଟ୍ଟନାୟକ, ଜଳସଂପଦ ବିଭାଗର ପ୍ରମୁଖ ସଚିବ ଶ୍ରୀ ଅରବିନ୍ଦ ବେହେରା ଓ ପଞ୍ଚାୟତିରାଜ ବିଭାଗର ସଚିବ ଶ୍ରୀ ରବିନାରାୟଣ ଦାସ ପ୍ରମୁଖ ଉପସ୍ଥିତ ଥିଲେ ।

# ସ୍ୱାଧୀନତା ସଂଗ୍ରାମୀ କ୍ଷେତ୍ରମୋହନ କାନୁନ୍‌ଗୋ ଜନ୍ମ ଶତବାର୍ଷିକ ସମାରୋହ

ଗତ ଅପ୍ରେଲ ମାସ ୨୫ ତାରିଖ ଦିନ ଜଗତସିଂହପୁର ଜିଲ୍ଲାର ବାଲିକୁଦା ବ୍ଲକ୍ ଅନ୍ତର୍ଗତ ଫୁରଣ ଗ୍ରାମରେ ସ୍ୱାଧୀନତା ସଂଗ୍ରାମୀ କ୍ଷେତ୍ରମୋହନ କାନୁନ୍‌ଗୋଙ୍କ ଜନ୍ମ ଶତବାର୍ଷିକ ସମାରୋହ ପାଳିତ ହୋଇଯାଇଛି । ଏହି ସମାରୋହରେ ମୁଖ୍ୟ ଅତିଥି ଭାବେ ଯୋଗଦେଇ ଜଗତସିଂହପୁର ବିଧାୟକ ଶ୍ରୀ ବିଷ୍ଣୁଚରଣ ଦାସ ଜିଲ୍ଲାର ସ୍ୱାଧୀନତା ସଂଗ୍ରାମୀମାନଙ୍କ ଗୁଣାବଳୀ ବର୍ଣ୍ଣନା କରିବା ସହିତ ସେମାନଙ୍କ ପ୍ରଦର୍ଶିତ ପଥରେ ଚାଲିବାକୁ ଆହ୍ୱାନ ଦେଇଥିଲେ । ସଂଗ୍ରାମୀ କ୍ଷେତ୍ରମୋହନ କାନୁନ୍‌ଗୋ ସରକାରୀ ଚାକିରିର ମୋହ ତଥା ପାରିବାରିକ ମାୟା ମମତାକୁ ଛିନ୍ନ କରି ମହାତ୍ମା ଗାନ୍ଧୀଙ୍କ ଡାକରାରେ ସତ୍ୟାଗ୍ରହ ଆନ୍ଦୋଳନରେ ଭାଗ ନେଇଥିଲେ । ଏହି ଶତବାର୍ଷିକ ସମାରୋହକୁ ଉଦ୍‌ଘାଟନ କରି ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ପୂର୍ବତନ ବିଧାୟକ ଶ୍ରୀ ପ୍ରିୟନାଥ ଦେ କହିଲେ ଯେ କ୍ଷେତ୍ରମୋହନ ସ୍ୱାଧୀନତା ଆନ୍ଦୋଳନରେ ନିଜକୁ ଉତ୍ସର୍ଗ କରିଥିଲେ । ତାଙ୍କର ହୃଦୟ ନିର୍ମଳ ଥିଲା ଓ ସେ ସ୍ପଷ୍ଟବାଦୀ ଥିଲେ । ଜଗତସିଂହପୁରଠାରେ ଥିବା ଅଳକା ସ୍ମୃତି ଭବନରେ କ୍ଷେତ୍ରମୋହନ କାନୁନ୍‌ଗୋ, ହରେକୃଷ୍ଣ ବିଶ୍ୱାଳ ଓ ଲୋକନାଥ ରାୟ ପ୍ରଭୃତିଙ୍କର ଫଟୋ ସ୍ଥାପିତ ହୋଇଛି । ଏହି ଉତ୍ସବରେ ପୂର୍ବତନ ବିଧାୟକ ଶ୍ରୀ ଜ୍ୟୋତିଷ ଦାସ, ଶ୍ରୀ ଲଲାଟେନ୍ଦୁ ମହାପାତ୍ର,

କ୍ଷେତ୍ରମୋହନ ଗାନ୍ଧିବାଦୀ ଥିଲେ ଏବଂ ଗୋପବନ୍ଧୁ ଚୌଧୁରୀଙ୍କ ସହ ଯୋଗଦେଇ ସ୍ୱାଧୀନତା ଆନ୍ଦୋଳନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ତାଙ୍କର ତ୍ୟାଗପୂତ ଜୀବନ, ନିଃସ୍ୱାର୍ଥପର ସେବା ଆମ ସମସ୍ତଙ୍କର ଧ୍ୟେୟ ହେଉ ବୋଲି ପୂର୍ବତନ ବିଧାୟକ ଶ୍ରୀ ମହାପାତ୍ର କହିଥିଲେ । ଏହି ଉତ୍ସବରେ ମୁଖ୍ୟବକ୍ତା ଭାବେ ଯୋଗଦେଇ ସେଇ ଗାଁର ଝିଅ ବିଶିଷ୍ଟ ଔପନ୍ୟାସିକା ଡଃ ପ୍ରତିଭା ରାୟ ବାଲିକୁଦା ଅଞ୍ଚଳରେ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇଥିବା ମହାପୁରୁଷଙ୍କ ଜୀବନୀକୁ ନେଇ ଏକ ସୁନ୍ଦର ସଂକଳନ ନିମନ୍ତେ ପ୍ରସ୍ତାବ ଦେଇଥିଲେ ଏବଂ ଏହି କାର୍ଯ୍ୟରେ ଶ୍ରୀ ଗୁରୁକଲ୍ୟାଣ ମହାପାତ୍ର ତାଙ୍କୁ ସାହାଯ୍ୟ କରିବାକୁ ସେ କହିଥିଲେ ।

ମହାତ୍ମା ଗାନ୍ଧୀ କହିଥିଲେ ଜଣେ ଯୁବତୀ ଅର୍ଦ୍ଧରାତ୍ରୀରେ ରାଜରାସ୍ତାରେ ଏକାକୀ ନିରାପଦରେ ଯାଇପାରିଲେ ତାହା ହିଁ ହେବ ପ୍ରକୃତ ସ୍ୱାଧୀନତା ବୋଲି ଡଃ ରାୟ ତାଙ୍କ ବକ୍ତବ୍ୟରେ ପ୍ରକାଶ କରିଥିଲେ । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ପୂର୍ବତନ ବିଧାୟକ ଶ୍ରୀ ଦୋଳଗୋବିନ୍ଦ ପ୍ରଧାନ ଏହି ଉତ୍ସବରେ ଯୋଗଦେଇ ଜଗତସିଂହପୁର ଜିଲ୍ଲାରେ ଜନ୍ମ ନେଇଥିବା ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ସରଳା ଦେବୀ, ନିତ୍ୟାନନ୍ଦ କାନୁନ୍‌ଗୋ, ଅନ୍ନପୂର୍ଣ୍ଣା ମହାରଣା, କ୍ଷେତ୍ରମୋହନ କାନୁନ୍‌ଗୋ ଭାରତର ସ୍ୱାଧୀନତା ଆନ୍ଦୋଳନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ବୋଲି କହିଥିଲେ । ସ୍ୱାଧୀନତା ସଂଗ୍ରାମୀ କ୍ଷେତ୍ରମୋହନ କାନୁନ୍‌ଗୋ ଜନ୍ମ ଶତବାର୍ଷିକ କମିଟିର ସଂପାଦକ ଶ୍ରୀ ଗୁରୁକଲ୍ୟାଣ ମହାପାତ୍ର ଉତ୍ସବଟିକୁ ପରିଚାଳନା କରିଥିଲେ । ଶ୍ରୀ କାଳୀପ୍ରସାଦ ମିଶ୍ରଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିବା ଏହି ସମାରୋହରେ ବିଜୁ ଜନତା ଦଳର ସାଧାରଣ ସଂପାଦକ ଶ୍ରୀ ନରେନ୍ଦ୍ର ସ୍ୱାଇଁ, ପୂର୍ବତନ ଓପୋଲ ଫେଡ୍ ଅଧ୍ୟକ୍ଷ ଶ୍ରୀ ରଘୁନନ୍ଦନ ଦାସ, ପୂର୍ବତନ ବ୍ଲକ୍ ଅଧ୍ୟକ୍ଷ ଶ୍ରୀ ପ୍ରଶାନ୍ତ ମୁଦୁଲି, ବ୍ଲକ୍ ଉପାଧ୍ୟକ୍ଷା ସରୋଜିନୀ ଦାସ, ବି.ଜେ.ଡ଼ି.ର ଶ୍ରୀ ପ୍ରକାଶ ଚନ୍ଦ୍ର ବସ୍ତିଆ ଓ ଶ୍ରୀ ଧୀରେନ୍ କୁମାର ଦାସ, ଶ୍ରୀ ବିମଳ ଦାସ, ଶ୍ରୀ ନଟବର ନାୟକ ପ୍ରମୁଖ ଉତ୍ସବରେ ଯୋଗଦେଇ ସ୍ୱର୍ଗତ କ୍ଷେତ୍ରମୋହନଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନ କରି ତାଙ୍କ ତୈଳ ଚିତ୍ରରେ ପୁଷ୍ପମାଲ୍ୟ ଅର୍ପଣ କରିଥିଲେ । ପ୍ରଦୀପ ପ୍ରଜ୍ୱଳନ ସହିତ ବନ୍ଦେ ଉତ୍କଳ ଜନନୀ ସଂଗୀତ ପରିବେଷଣ କରାଯାଇଥିଲା । ଏହି ଅବସରରେ ମୁଖ୍ୟ ଅତିଥି ବିଧାୟକ ଶ୍ରୀ ବିଷ୍ଣୁଚରଣ ଦାସ, ପୂର୍ବତନ ବିଧାୟକ ତଥା ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ପ୍ରିୟନାଥ ଦେ ଏବଂ ଶ୍ରୀ ଦୋଳଗୋବିନ୍ଦ ପ୍ରଧାନଙ୍କୁ ସମ୍ବର୍ଦ୍ଧିତ କରିଥିଲେ । ଡଃ ପ୍ରତିଭା ରାୟଙ୍କ 'ଗାଁ ଗାଁରେ ଗାନ୍ଧୀ ...' ଶ୍ରୀ ଗୁରୁକଲ୍ୟାଣ ମହାପାତ୍ରଙ୍କ 'ଶହେ ବର୍ଷ ପରେ...' ଏବଂ ଡାଃ କିରଣବାଳା ମହାପାତ୍ରଙ୍କ ଦେଶପ୍ରୀତି ଓ ଅହିଂସାର ପ୍ରତୀକ ମୋ' ବାପା ଲେଖା ସମ୍ବଳିତ କ୍ଷେତ୍ରମୋହନ କାନୁନ୍‌ଗୋଙ୍କ ସ୍ମରଣିକା ମୁଖ୍ୟ ଅତିଥି ଉନ୍ମୋଚନ କରିଥିଲେ । ସ୍ୱାଧୀନତା ସଂଗ୍ରାମୀ କ୍ଷେତ୍ରମୋହନଙ୍କ ସୁପୁତ୍ର ଉଦ୍ଭିଦ ବିଜ୍ଞାନୀ ପ୍ରଫେସର ପ୍ରଭାତ କାନୁନ୍‌ଗୋ ଏହି ଉତ୍ସବରେ ଯୋଗଦେଇଥିବା ଅତିଥିମାନଙ୍କସମେତ ଗାଁର ଲୋକମାନଙ୍କୁ ଅଭିନନ୍ଦନ ଜଣାଇଥିଲେ ।

(ଜଗତସିଂହପୁର ଜିଲ୍ଲା ସୂଚନା ଓ ଲୋକ ସଂପର୍କ ବିଭାଗ ଆନୁକୂଲ୍ୟରେ)

## ତାଳଚେରରେ ମେଡ଼ିକାଲ କଲେଜ ଖୋଲାଯିବାକୁ ଆଲୋଚନା

ତାଳଚେରଠାରେ ଏମ୍.ସି.ଏଲ୍. ପକ୍ଷରୁ ମେଡ଼ିକାଲ କଲେଜ ଖୋଲାଯିବ । ଗତ ଅପ୍ରେଲ ୨୪ ତାରିଖରେ ସଚିବାଳୟଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଓ କୋଲ୍ ଇଣ୍ଡିଆର ଅଧ୍ୟକ୍ଷ ଶ୍ରୀ ପାର୍ଥ ସାରଥୀ ଭଟ୍ଟାଚାର୍ଯ୍ୟଙ୍କ ମଧ୍ୟରେ ଆଲୋଚନା ସମୟରେ ଏହା ସ୍ଥିର କରାଯାଇଛି । ତାଳଚେରଠାରେ ଥିବା ଏମ୍.ସି.ଏଲ୍.ର ଶହେଶଯ୍ୟା ବିଶିଷ୍ଟ ଡାକ୍ତରଖାନାକୁ ଚାରିଶହ ଶଯ୍ୟାକୁ ବୃଦ୍ଧି କରି ଏହାକୁ ଏକ ମେଡ଼ିକାଲ କଲେଜରେ ପରିଣତ କରିବା ପାଇଁ ମୁଖ୍ୟମନ୍ତ୍ରୀ ପ୍ରସ୍ତାବ ଦେଇଥିଲେ । ଶ୍ରୀ ଭଟ୍ଟାଚାର୍ଯ୍ୟ ଏହି ପ୍ରସ୍ତାବକୁ ଗ୍ରହଣ କରି ଏ ଦିଗରେ ଶୀଘ୍ର ପଦକ୍ଷେପ ନେବେ ବୋଲି ମୁଖ୍ୟମନ୍ତ୍ରୀଙ୍କୁ ପ୍ରତିଶ୍ରୁତି ଦେଇଥିଲେ ।

ଖଣି ଅଞ୍ଚଳର ବାସଚ୍ୟୁତ ଆଦିବାସୀମାନଙ୍କ ଥଇଥାନ ନିମନ୍ତେ ଏମ୍.ସି.ଏଲ୍. ପକ୍ଷରୁ ଆଦର୍ଶ ଥଇଥାନ କେନ୍ଦ୍ର ନିର୍ମାଣ କରାଯିବ ବୋଲି ଶ୍ରୀ ଭଟ୍ଟାଚାର୍ଯ୍ୟ ସୂଚନା ଦେଇଥିଲେ । ଆଦିବାସୀ ସଂସ୍କୃତି ଓ ଆଧୁନିକ ଶିକ୍ଷାର ଏହା ଏକ ଆଦର୍ଶ କେନ୍ଦ୍ର ହେବ ବୋଲି ସେ କହିଥିଲେ । ଏତଦ୍‌ବ୍ୟତୀତ ଖଣି ଅଞ୍ଚଳରେ ସ୍ୱାସ୍ଥ୍ୟ ସେବା ଯୋଗାଇଦେବା ପାଇଁ ଏମ୍.ସି.ଏଲ୍. ପକ୍ଷରୁ ପ୍ରତ୍ୟହ ଭ୍ରାମ୍ୟମାଣ ଡିସ୍‌ପେନସରୀ ୟୁନିଟ୍ ମୁତୟନ କରାଯିବ ବୋଲି ମଧ୍ୟ ଶ୍ରୀ ଭଟ୍ଟାଚାର୍ଯ୍ୟ ସୂଚନା ଦେଇଥିଲେ ।

ତାଳଚେର ଅଞ୍ଚଳରେ ଉତ୍ତାପ ବୃଦ୍ଧିରେ ଉଦ୍‌ବେଗ ପ୍ରକାଶ କରି ଏହାକୁ ରୋକିବା ନିମନ୍ତେ ଖଣି ଅଞ୍ଚଳମାନଙ୍କରେ ବ୍ୟାପକ ବୃକ୍ଷ ରୋପଣ କରାଯିବା ଉପରେ ମୁଖ୍ୟମନ୍ତ୍ରୀ ଆଲୋଚନା ସମୟରେ ଗୁରୁତ୍ୱାରୋପ କରିଥିଲେ । ଖଣି ଅଞ୍ଚଳରେ ଛାୟାପ୍ରଦ ଓ ପାରମ୍ପରିକ ବୃକ୍ଷରୋପଣ କରିବା ପାଇଁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଥିଲେ ଏବଂ ଏ ଦିଗରେ ରାଜ୍ୟ ସରକାର ଏମ୍.ସି.ଏଲ୍. କର୍ତ୍ତୃପକ୍ଷଙ୍କୁ ଆବଶ୍ୟକ ସହଯୋଗ ଯୋଗାଇଦେବେ ବୋଲି ଶ୍ରୀ ପଟ୍ଟନାୟକ କହିଥିଲେ । ଏହି ବୃକ୍ଷରୋପଣ କାର୍ଯ୍ୟ କୃଷି ଉତ୍ପାଦନ କମିଶନର ଏବଂ ଏମ୍.ସି.ଏଲ୍.ର ପରିଚାଳନା ନିର୍ଦ୍ଦେଶକ ମିଳିତ ଭାବରେ ପରିଚାଳନା କରିବେ ବୋଲି ବୈଠକରେ ସ୍ଥିର କରାଯାଇଥିଲା ।

ଏହି ଆଲୋଚନା ସମୟରେ ମୁଖ୍ୟମନ୍ତ୍ରୀଙ୍କ ପ୍ରମୁଖ ସଚିବ ଶ୍ରୀ ବିନୟ କୁମାର ପଟ୍ଟନାୟକ, ଏମ୍.ସି.ଏଲ୍.ର ଅଧ୍ୟକ୍ଷ ତଥା ପରିଚାଳନା ନିର୍ଦ୍ଦେଶକ ଶ୍ରୀ ଏସ୍.ଆର୍. ଉପାଧ୍ୟାୟ ଏବଂ ଶକ୍ତି ସଚିବ ଶ୍ରୀ ସୁରେଶ ଚନ୍ଦ୍ର ମହାପାତ୍ର ପ୍ରମୁଖ ଉପସ୍ଥିତ ଥିଲେ ।

## ଅନୁଗୁଳ ଓ ତାଳଚେର ଅଞ୍ଚଳରେ ଉତ୍ତାପ ବୃଦ୍ଧି ରୋକିବା ପାଇଁ ବୈଠକ

ଅନୁଗୁଳ ଓ ତାଳଚେର ଅଞ୍ଚଳରେ ଉତ୍ତାପ ବୃଦ୍ଧିକୁ ନିୟନ୍ତ୍ରଣ କରିବା ପାଇଁ ଏକ ସମୀକ୍ଷା ବୈଠକ ଗତ ଅପ୍ରେଲ ୨୪ ତାରିଖ ପୂର୍ବାହ୍ନରେ ସଚିବାଳୟଠାରେ ମୁଖ୍ୟ ଶାସନ ସଚିବ ଶ୍ରୀ ଅଜିତ୍ କୁମାର ତ୍ରିପାଠୀଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇ ବିଭିନ୍ନ କାର୍ଯ୍ୟପନ୍ଥା ସ୍ଥିର କରାଯାଇଅଛି । ଏବେ ତାଳଚେର ଅଞ୍ଚଳରେ ତାପମାତ୍ରା ୪୫.୫ ଡିଗ୍ରୀରେ ପହଞ୍ଚିଥିବା ବେଳେ କୋଇଲା ଖଣି ଅଞ୍ଚଳରେ ଏହାଠାରୁ ଅଧିକା ଥାଇପାରେ ବୋଲି ଜଣାପଡ଼ିଛି ଯାହାକି ସରକାରଙ୍କ ପାଇଁ ଚିନ୍ତାର କାରଣ ହୋଇଛି । ଆଲୋଚନା ଆରମ୍ଭରେ ରାଜ୍ୟ ପରିବେଶ ନିର୍ଦ୍ଦେଶକ ଶ୍ରୀ ଭାଗିରଥି ବେହେରା ଉତ୍ତାପ ବୃଦ୍ଧିର ତିନୋଟି ମୁଖ୍ୟ କାରଣ ଦର୍ଶାଇବା ସହ ଏଥିରୁ ମୁକ୍ତି ପାଇବା ପାଇଁ ସମ୍ଭାବ୍ୟ ପଦକ୍ଷେପ ଉପରେ ମଧ୍ୟ ଆଲୋକପାତ କରିଥିଲେ । ଉତ୍ତାପ ବୃଦ୍ଧିର ପ୍ରମୁଖ କାରଣଗୁଡ଼ିକ ମଧ୍ୟରେ ବିସ୍ତିର୍ଣ୍ଣ କୋଇଲାଖଣି, ବୃହତ୍ ତାପଜ ବିଦ୍ୟୁତ୍ କାରଖାନାର ଅବସ୍ଥିତି ଏବଂ ପରିବହନ ବ୍ୟବସ୍ଥା ଅନ୍ୟତମ ବୋଲି ପରିବେଶ ନିର୍ଦ୍ଦେଶକ ପ୍ରକାଶ କରିଥିଲେ । ସୂଚନାଯୋଗ୍ୟ ଯେ, ଅନୁଗୁଳ-ତାଳଚେର ଅଞ୍ଚଳରେ ଏବେ ତାପଜ ବିଦ୍ୟୁତ୍ କାରଖାନା ମାଧ୍ୟମରେ ପ୍ରାୟ ୪୪୫୦ ମେଗାୱାଟ ଶକ୍ତି ଉତ୍ପାଦିତ ହେଉଅଛି, ଯାହାକି ଆଞ୍ଚଳିକ ପରିବେଶକୁ ଅଧିକ ଉତ୍ତପ୍ତ କରାଇବାରେ ସହାୟକ ହୋଇଥାଏ । ମୁଖ୍ୟ ଶାସନ ସଚିବ ଅନୁଧ୍ୟାନ କରି ଜାଣିଲେ ଯେ, ଉଦ୍ୟୋଗମାନଙ୍କ ଦ୍ୱାରା ତ୍ରୁଟିପୂର୍ଣ୍ଣ କୋଇଲା ଖନନ, ଅଧିକ କୋଇଲା ଖଣିର ସୃଷ୍ଟି ଖନନ ପରେ କୋଇଲାକୁ ସଂଗେସଂଗେ ପରିବହନ ନକରି ବହୁଦିନ ଜମାକରି ରଖିବା, ତାପଜ ବିଦ୍ୟୁତ୍ କେନ୍ଦ୍ରରୁ ଅଧିକ ବିଦ୍ୟୁତ୍ ଉତ୍ପାଦନ, ପାଉଁଶ ପୋଖରୀ ସବୁକୁ ଖୋଲା ରଖିବା ଓ ତା'ର ଉପଯୁକ୍ତ ପୁନଃ ସ୍ଥିତିକରଣ ନକରାଇବା ଆଦି ଉତ୍ତାପ ବୃଦ୍ଧିର ମୁଖ୍ୟ କାରଣ । ଏଥିପାଇଁ ଅଧିକ ସଂଖ୍ୟକ ବୃକ୍ଷରୋପଣ କରି ସବୁଜ ବଳୟ ସୃଷ୍ଟି କରିବା, ଅଧିକ ସଂଖ୍ୟକ ଜଳାଶୟ ସୃଷ୍ଟି କରିବା, ପଥପ୍ରାନ୍ତ ବନୀକରଣ କରାଇବା, କୋଇଲା ପରିବହନ ପାଇଁ ବ୍ୟବହୃତ ରାସ୍ତାରେ ଜଳସିଞ୍ଚନ କରିବା, ଭଜନ- ୨୦-୨୦ ଭଳି ଏକ ଆଞ୍ଚଳିକ ପରିବେଶ ପରିଚାଳନା ଯୋଜନା ପ୍ରସ୍ତୁତ କରିବା, ପରିବେଶ ପରିଚାଳନା ପାଣ୍ଠିକୁ ସାହାଯ୍ୟ ସହଯୋଗ କରିବା ପାଇଁ ମୁଖ୍ୟ ଶାସନ ସଚିବ ଉଦ୍ୟୋଗମାନଙ୍କୁ ପରାମର୍ଶ ଦେଇଥିଲେ । ଏହିସବୁ ସମସ୍ୟାର ଆଶୁ ମୁକାବିଲା ପାଇଁ ତତ୍କାଳ ପଦକ୍ଷେପ ସ୍ୱରୂପ ପର୍ଯ୍ୟାପ୍ତ ଜଳଛତ୍ର ଖୋଲିବା, ନିକଟସ୍ଥ ଡାକ୍ତରଖାନାଗୁଡ଼ିକରେ ଥଣ୍ଡା ପାନୀୟ ଜଳ, ବରଫ, ଔଷଧ ଓ ଅଂଶୁଘାତ ପ୍ରତିକାର ନିମନ୍ତେ ସମସ୍ତ ବ୍ୟବସ୍ଥା ପ୍ରସ୍ତୁତ ରଖିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଏହି ପରିପ୍ରେକ୍ଷୀରେ ମୁଖ୍ୟ ଶାସନ ସଚିବ ଆଭେନ୍ୟୁ ବୃକ୍ଷରୋପଣ ଉପରେ ଜୋର୍ ଦେଇଥିଲେ ।

ଏହି ସମୀକ୍ଷା ବୈଠକରେ ଉନ୍ନୟନ କମିଶନର ଶ୍ରୀ ରବି ନାରାୟଣ ବହିଦାର, ଶିକ୍ଷ ବିଭାଗର ପ୍ରମୁଖ ଶାସନ ସଚିବ ଶ୍ରୀ ଚିନ୍ମୟ ବସୁ ଇସ୍ପାତ ଓ ଖଣି ବିଭାଗର ସଚିବ ଶ୍ରୀ ଅଶୋକ ଦଳୱାର, ଜଙ୍ଗଲ ଓ ପରିବେଶ ବିଭାଗର ସ୍ୱତନ୍ତ୍ର ସଚିବ ଶ୍ରୀ ପ୍ରିୟନାଥ ପାଢ଼ୀ, ପରିବେଶ ନିର୍ଦ୍ଦେଶକ ଶ୍ରୀ ଭାଗିରଥି ବେହେରା, ବରିଷ୍ଠ ବୈଜ୍ଞାନିକ ଡଃ ପ୍ରମୋଦ ପୃଷ୍ଟି, ମୁଖ୍ୟ ବନ୍ୟ ସଂରକ୍ଷକ ଶ୍ରୀ ଭି.ପି. ସିଂହ, ନାଲ୍କୋର ଶ୍ରୀ ଏସ୍. ପଟ୍ଟନାୟକ, ଶ୍ରୀ ଜୀବନ ମହାପାତ୍ର ଓ କେ.କେ. ପଣ୍ଡା, ଏନ୍.ଟି.ପି.ସି.ର ନିର୍ବାହୀ ନିର୍ଦ୍ଦେଶକ ଶ୍ରୀ ଦେଶପାଣ୍ଡେ ଓ ମହାନଦୀ କୋଲିଆରୀ ତରଫରୁ ଶ୍ରୀ ଭି.କେ. କଟ୍‌ୱାଲେ ପ୍ରମୁଖ ଅଂଶଗ୍ରହଣ କରିଥିଲେ ।

## ମଧୁବାବୁ ନଥିଲେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସ୍ୱପ୍ନରେ ହିଁ ରହିଯାଇଥାନ୍ତା : ଆଇନ ମନ୍ତ୍ରୀ

ଓଡ଼ିଆ ଜାତିର ନବଜାଗରଣରେ କୁଳବୃଦ୍ଧ ମଧୁସୂଦନଙ୍କ ଭୂମିକା ଥିଲା ଅନବଦ୍ୟ । ସ୍ୱାର୍ଥକୁ ଆହୂତି ଦେଇ ଜାତିପ୍ରେମର ବହ୍ନି ପ୍ରଜ୍ୱଳିତ କରି ଖଣ୍ଡବିଖଣ୍ଡିତ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ କରିବାରେ ତାଙ୍କର ପ୍ରଚେଷ୍ଟାର ପଟ୍ଟାନ୍ତର ନଥିଲା । ଗତ ଅପ୍ରେଲ ୨୮ ତାରିଖରେ ମଧୁବାବୁଙ୍କ ଦାୟାଦ ନିଷ୍ପ୍ରଭ, ପରମୁଖାପେକ୍ଷୀ । ତାଙ୍କ ପ୍ରେରଣା, ତ୍ୟାଗରେ ଅନୁପ୍ରାଣିତ ହୋଇ ଓଡ଼ିଆ ଜାତି ପୁଣି ଥରେ ଜାଗ୍ରତ ହୋଇ ହୃତଗୌରବକୁ ଫେରାଇ ଆଣିବା ପାଇଁ ଶିକ୍ଷ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଆହ୍ୱାନ ଦେଇଛନ୍ତି ।

ଅପ୍ରେଲ ୨୮ ତାରିଖ ସନ୍ଧ୍ୟାରେ ସ୍ଥାନୀୟ ଜୟଦେବ ଭବନଠାରେ ସୂଚନା ଓ ଲୋକ ସଂପର୍କ ବିଭାଗ ଆନୁକୂଲ୍ୟରେ ଆୟୋଜିତ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ରାଜ୍ୟସ୍ତରୀୟ ଜୟନ୍ତୀ ସମାରୋହରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଶିକ୍ଷ, ଆଇନ ଓ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ କହିଲେ ଯେ ଏ ଜାତିର ଭୀଷ୍ମ ପିତାମହ କୁଳବୃଦ୍ଧ ମଧୁସୂଦନଙ୍କ ଉତ୍ତୁଙ୍ଗ ବ୍ୟକ୍ତିତ୍ୱ କେବଳ ଭାରତ କାହିଁକି, ବିଶ୍ୱରେ ବିରଳ । ନିଜ ମାତୃଭୂମି, ମାତୃଭାଷା ପ୍ରତି ତାଙ୍କ ଆବେଗ, ମମତା ଅନନ୍ୟ ଥିଲା । ଓଡ଼ିଆ ଜାତିର ସାମଗ୍ରିକ ବିକାଶ ଓ ସ୍ୱାଭିମାନକୁ ବଜାୟ ରଖିବା

ପାଇଁ ସେ ସର୍ବସ୍ୱ ତ୍ୟାଗ କରିଥିଲେ । ତାଙ୍କ ରଚିତ 'ଉତ୍କଳ ସନ୍ତାନ', 'ଜନନୀର ଉକ୍ତି', 'ସନ୍ତାନର ଭକ୍ତି', 'ଜାତି ଇତିହାସ'ରେ ମାତୃଭୂମି ଓ ତାହାର ସନ୍ତାନ ପାଇଁ ଆବେଗପୂର୍ଣ୍ଣ ଜାତୀୟତା ଭାବ ଭରି ରହିଥିଲା । ମଧୁବାବୁ ନଥିଲେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ସ୍ୱପ୍ନ ହୋଇ ରହିଥାଆନ୍ତା । ଉତ୍କଳ ସନ୍ତାନ ବୋଲି ଆମର ପରିଚୟ ମଧ୍ୟ ନଥାଆନ୍ତା । ଖ୍ରୀଷ୍ଟିଆନ ହୋଇ ମଧ୍ୟ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଉପରେ ଠାକୁର ରାଜାଙ୍କ ଅଧିକାର ସେ ସାବ୍ୟସ୍ତ କରିଥିଲେ । ଜମି ଉପରେ ଫସଲ ଉତ୍ପାଦନକାରୀ ପ୍ରଥମ ଅଧିକାର ରହିଛି ଏହା ମଧ୍ୟ ସେ ସାବ୍ୟସ୍ତ କରିପାରିଥିଲେ । ଶିଳ୍ପର ଉନ୍ନତି ବିନା ଜାତିର ଅର୍ଥନୈତିକ ବିକାଶ ଅସମ୍ଭବ । 'ଉତ୍କଳ ଟ୍ୟାନେରୀ' ଓ 'ଉତ୍କଳ ଆର୍ଟୱେର' ପ୍ରତିଷ୍ଠା କରି ସେ ଏହା ପ୍ରମାଣ କରି ଦେଇଥିଲେ । ଓଡ଼ିଆଙ୍କ ସ୍ୱାଭିମାନ, ଓଡ଼ିଆତ୍ୱ, ଐତିହ୍ୟ, ସଂସ୍କୃତିର ସୁରକ୍ଷା ପାଇଁ ମଧୁବାବୁଙ୍କ ଉଦ୍ୟମ ଏ ଜାତିର ପଥପ୍ରଦର୍ଶନ କରୁ, ଏ ଜାତିକୁ ପ୍ରେରଣାର ଆଲୋକ ଦେଖାଉ ମନ୍ତ୍ରୀ ଶ୍ରୀ ହରିଚନ୍ଦନ ଏହି ଆହ୍ୱାନ ଦେଇଥିଲେ ।

ଏହି ଜୟନ୍ତୀ ସମାରୋହରେ କୃଷି ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ରନାଥ ନାୟକ ସଭାପତିତ୍ୱ କରିଥିଲେ । ରାଜନୀତି ବିଜ୍ଞାନ ପ୍ରଫେସର ସୂର୍ଯ୍ୟ ମିଶ୍ର ମୁଖ୍ୟବକ୍ତା ରୂପେ ଯୋଗ ଦେଇ ମଧୁବାବୁଙ୍କ ଯୋଗୁଁ ଓଡ଼ିଆ ଜାତି ଏକ ସ୍ୱତନ୍ତ୍ର ପରିଚୟ ପାଇ ପାରିଥିଲା ବୋଲି ମତବ୍ୟକ୍ତ କରିଥିଲେ ।

ସୂଚନା ଓ ଲୋକ ସଂପର୍କ ନିର୍ଦ୍ଦେଶକ ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତି ସ୍ୱାଗତ ଭାଷଣ ଦେଇଥିଲେ । ଯୁଗ୍ମ ନିର୍ଦ୍ଦେଶକ ଶ୍ରୀ ଲୋକନାଥ ତନ୍ତୀ ଧନ୍ୟବାଦ ଦେଇଥିଲେ ।

## ପଞ୍ଚାୟତିରାଜ ମନ୍ତ୍ରୀ ଶ୍ରୀ ରଘୁନାଥ ମହାନ୍ତିଙ୍କ ଦ୍ୱାରା ଗ୍ରାମ୍‌ସାଟ୍ ମାଧ୍ୟମରେ 'ଆମ ପୋଖରୀ' ଯୋଜନାର ସମୀକ୍ଷା

ରାଜ୍ୟ ପଞ୍ଚାୟତିରାଜ ମନ୍ତ୍ରୀ ଶ୍ରୀ ରଘୁନାଥ ମହାନ୍ତି ଗତ ୧୪ ତାରିଖ ପୂର୍ବାହ୍ନରେ ଗ୍ରାମ୍‌ସାଟ୍ ମାଧ୍ୟମରେ 'ଆମ ପୋଖରୀ' ଯୋଜନାର ସମୀକ୍ଷା ବିଭିନ୍ନ ଜିଲ୍ଲାର ଜିଲ୍ଲାପାଳ ଓ ଗ୍ରାମ୍ୟ ଉନ୍ନୟନ ସଂସ୍ଥାର ପ୍ରକଳ୍ପ ନିର୍ଦ୍ଦେଶକଙ୍କ ସହ ସଂପନ୍ନ କରିଛନ୍ତି ।

ସଂପ୍ରତି ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନିର୍ଦ୍ଦେଶ ଅନୁଯାୟୀ ରାଜ୍ୟର ପ୍ରତ୍ୟେକ ରାଜସ୍ୱ ଗ୍ରାମରେ ଏକ ସ୍ଥାୟୀ ଜଳ ଉତ୍ସ ସୃଷ୍ଟି ପାଇଁ ନୂତନ ପୋଖରୀ ଖୋଳିବା ଓ ପୁରାତନ ପୋଖରୀର ପୁନରୁଦ୍ଧାର ପାଇଁ 'ଆମ ପୋଖରୀ' ଯୋଜନା ଆରମ୍ଭ କରାଯାଇଛି । ଏହି ଯୋଜନାର ଅର୍ଥ ଜାତୀୟ ଗ୍ରାମୀଣ ନିଶ୍ଚିତ କର୍ମ ନିଯୁକ୍ତି ଯୋଜନାରୁ ଭରଣା କରାଯାଉଛି । ଚଳିତ ବର୍ଷ ଜଳସେଚନ ବର୍ଷ । ରାଜ୍ୟର ପ୍ରତ୍ୟେକ ଜିଲ୍ଲାକୁ ଶତକଡ଼ା ୩୫ ଭାଗରୁ ଅଧିକ ଜମିକୁ ଜଳ ସେଚିତ କରିବା ପାଇଁ ବିଭିନ୍ନ ବିଭାଗର ସହାୟତା ଦ୍ୱାରା ରାଜ୍ୟ ସରକାର ଏହା କାର୍ଯ୍ୟକାରୀ କରୁଛନ୍ତି । କ୍ଷୁଦ୍ର ଜଳସେଚନ ଏବଂ ମୃତ୍ତିକା ସଂରକ୍ଷଣ ବିଭାଗ ଏହି କାର୍ଯ୍ୟରେ ଅନ୍ତର୍ଭୁକ୍ତ ହୋଇଛନ୍ତି । ପଞ୍ଚାୟତ ଅଧୀନସ୍ଥ ପୁରାତନ ପୋଖରୀ, ରାଜସ୍ୱ ବିଭାଗର ପୋଖରୀ ସହ ନୂତନ ପୋଖରୀ ଖନନ କରି ଜଳ ଅମଳ ପ୍ରକଳ୍ପ କରିବା ପାଇଁ ଏହି ଯୋଜନାର ନିଷ୍ପତ୍ତି ଗ୍ରହଣ କରାଯାଇଛି । ଏହାର ସଫଳ ରୂପାୟନ ଦ୍ୱାରା ଚାଷୀମାନଙ୍କ ଜମିକୁ ଜଳଯୋଗାଣ ଓ ଜଳସେଚିତ ଜମିର ପରିମାଣ ବୃଦ୍ଧି ଦ୍ୱାରା ଚାଷୀମାନଙ୍କ ଆର୍ଥିକ ଅବସ୍ଥାର ଅଭିବୃଦ୍ଧି ସହ ରାଜ୍ୟର ଆର୍ଥିକ ପ୍ରଗତି ସମ୍ଭବ ହୋଇପାରିବ ବୋଲି ମନ୍ତ୍ରୀ ଶ୍ରୀ ମହାନ୍ତି ଏହି ସମୀକ୍ଷାରେ ପ୍ରକାଶ କରିଥିଲେ ।

ବର୍ଷାଦିନ ପୂର୍ବରୁ ଏହି କାର୍ଯ୍ୟ ସମାପନ କରିବା ପାଇଁ ମନ୍ତ୍ରୀ ଶ୍ରୀ ମହାନ୍ତି ସମସ୍ତ ଜିଲ୍ଲାପାଳ ଓ ଡି.ଆର୍.ଡି.ଏ. ପ୍ରକଳ୍ପ ନିର୍ଦ୍ଦେଶକମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ସମୀକ୍ଷାରୁ ଜଣାପଡ଼ିଛି ଯେ, ଆମ ପୋଖରୀ ଖନନ କାର୍ଯ୍ୟ କେତେକ ଜିଲ୍ଲାରେ ଦ୍ରୁତ ଗତିରେ ଆଗେଇ ଚାଲିବା ସହ ଅନ୍ୟ ଜିଲ୍ଲାଗୁଡ଼ିକରେ ଆରମ୍ଭ ହୋଇସାରିଛି । କାର୍ଯ୍ୟ ହୋଇ ନଥିବା ଜିଲ୍ଲାଗୁଡ଼ିକରେ ଏହା ଶୀଘ୍ର ଆରମ୍ଭ କରିବାକୁ ଶ୍ରୀ ମହାନ୍ତି ନିର୍ଦ୍ଦେଶ ଦେଇଛନ୍ତି ।

ଏହି ସମୀକ୍ଷାରେ ରାଜ୍ୟର ୨୬ ଗୋଟି ଜିଲ୍ଲାର କେତେକ ଜିଲ୍ଲାପାଳ ଓ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥାର ପ୍ରକଳ୍ପ ନିର୍ଦ୍ଦେଶକ ଅଂଶଗ୍ରହଣ କରିଥିଲେ । ପଞ୍ଚାୟତିରାଜ ବିଭାଗ କମିଶନର ତଥା ଶାସନ ସଚିବ ଶ୍ରୀ ରବିନାରାୟଣ ଦାଶ, ସ୍ୱତନ୍ତ୍ର ପ୍ରକଳ୍ପ ନିର୍ଦ୍ଦେଶକ ଶ୍ରୀ ଶାଶ୍ୱତ ମିଶ୍ର, ଅତିରିକ୍ତ ଶାସନ ସଚିବ ଶ୍ରୀ ବାଇଧର ବିଶ୍ୱାଳ ଏହି ସମୀକ୍ଷା ବେଳେ ଉପସ୍ଥିତ ରହି ବିଭିନ୍ନ ଜିଲ୍ଲାପାଳ ଓ ପ୍ରକଳ୍ପ ନିର୍ଦ୍ଦେଶକମାନଙ୍କର ପ୍ରଶ୍ନର ଉତ୍ତର ପ୍ରଦାନ କରିଥିଲେ ।

## ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ପ୍ରମୁଖ ବିନ୍ଧାଣୀ ଥିଲେ କୃଷ୍ଣଚନ୍ଦ୍ର ଗଜପତି : ଶିଳ୍ପ ମନ୍ତ୍ରୀ

ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ କରିବାରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ଅଦମ୍ୟ ପ୍ରଚେଷ୍ଟା ଅତୁଳନୀୟ । ନବଉତ୍କଳର ନିର୍ମାଣରେ ପ୍ରମୁଖ ବିନ୍ଧାଣୀ ଭାବେ କୃଷ୍ଣଚନ୍ଦ୍ର ଗଜପତି ଓଡ଼ିଆ ଜାତିର ଚିର ନମସ୍ୟ ହୋଇ ରହିବେ ବୋଲି ଆଇନ, ଶିଳ୍ପ ଓ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ମତବ୍ୟକ୍ତ କରିଛନ୍ତି ।

ଅପ୍ରେଲ ୨୭ ତାରିଖ ସନ୍ଧ୍ୟାରେ ସ୍ଥାନୀୟ ଜୟଦେବ ଭବନରେ ସୂଚନା ଓ ଲୋକ ସଂପର୍କ ବିଭାଗ ଏବଂ ଦକ୍ଷିଣ ଓଡ଼ିଶା ଉନ୍ନୟନ ପରିଷଦ, ଭୁବନେଶ୍ୱର ଆନୁକୂଲ୍ୟରେ ଆୟୋଜିତ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ରାଜ୍ୟସ୍ତରୀୟ ଜୟନ୍ତୀ ସମାରୋହରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଆଇନ ମନ୍ତ୍ରୀ ଶ୍ରୀ ହରିଚନ୍ଦନ କହିଲେ ଯେ କୃଷ୍ଣଚନ୍ଦ୍ର ଗଜପତି ଦେଶପ୍ରେମ ଓ ଜାତିପ୍ରୀତିର ଏକ ଉଜ୍ଜ୍ୱଳ ଆଲୋକବର୍ତ୍ତିକା ଥିଲେ । ସେ ଥିଲେ ଜଣେ ବିବିଧବର୍ଣ୍ଣ ବ୍ୟକ୍ତିତ୍ୱ ଓ ରାଜ୍ୟର କାଳଜୟୀ ସଂଗ୍ରାମୀ । ପାରଳାର ମହାରାଜା ଭାବେ କେବଳ ଶାସନ କି ପ୍ରଶାସନ ନୁହେଁ, ଶିକ୍ଷା, କୃଷି, କଳା, ସଂସ୍କୃତି, ସାହିତ୍ୟ, ସଂଗୀତ, ଶିଳ୍ପ, ବାଣିଜ୍ୟ, ସମୂହ ଜନଜୀବନର ଅର୍ଥନୈତିକ ବିକାଶ କ୍ଷେତ୍ରରେ ତାଙ୍କର ଅବଦାନ ଅବିସ୍ମରଣୀୟ ଥିଲା । ଭାଷା ଓ ଜାତି ସୂତ୍ରରେ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଗୋଲଟେବୁଲ ବୈଠକରେ ତାଙ୍କ ଦାବି ସମସ୍ତଙ୍କୁ ସ୍ତବ୍ଧ କରିଥିଲା । ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ ଭାବେ ଦକ୍ଷତାର ସହ ଦାୟିତ୍ୱ ସଂପାଦନ କରି ରାଜ୍ୟ ସର୍ବାଙ୍ଗୀନ ଉନ୍ନତିରେ ସେ ବ୍ରତୀ ହୋଇଥିଲେ । ଓଡ଼ିଆ ଭାଷା ଓ ସାହିତ୍ୟର ଅଭିବୃଦ୍ଧି ପାଇଁ ତାଙ୍କ ପ୍ରଚେଷ୍ଟା ଓ ବଦାନ୍ୟତା ଭୁଲିବାର ନୁହେଁ । ଜଣେ ସ୍ୱୟଂ ସଂପୂର୍ଣ୍ଣ ମଣିଷ, ସୁଶାସକ, ଦେଶଭକ୍ତ, ସାହିତ୍ୟାନୁରାଗୀ ଭାବେ ଏ ଜାତି ତାଙ୍କୁ ଚିରଦିନ ମନେ ରଖିବ ବୋଲି ଆଇନ ମନ୍ତ୍ରୀ ଶ୍ରୀ ହରିଚନ୍ଦନ ମତବ୍ୟକ୍ତ କରିଥିଲେ ।

ପର୍ଯ୍ୟଟନ ଓ ଅବକାରୀ ମନ୍ତ୍ରୀ ଶ୍ରୀ ଦେବୀପ୍ରସାଦ ମିଶ୍ର ସଭାପତିତ୍ୱ କରି କହିଲେ ଯେ ଓଡ଼ିଆ ଜାତିକୁ ଏକ ସ୍ୱତନ୍ତ୍ର ପରିଚୟ ପ୍ରଦାନ କରିବାରେ ମହାରାଜା କୃଷ୍ଣଚନ୍ଦ୍ରଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ ।

ମୁଖ୍ୟବକ୍ତା ଭାବେ ଐତିହାସିକ ଡକ୍ଟର ଅତୁଳଚନ୍ଦ୍ର ପ୍ରଧାନ ପାରଳାର ମହାରାଜା କୃଷ୍ଣଚନ୍ଦ୍ରଙ୍କ ଜୀବନାଦର୍ଶର ବହୁ ଅନାଲୋଚିତ ଦିଗ ଉପରେ ଆଲୋକପାତ କରିଥିଲେ ।

ଅବସରପ୍ରାପ୍ତ ପ୍ରଶାସକ ରଘୁନାଥ ମିଶ୍ର, ଦକ୍ଷିଣ ଓଡ଼ିଶା ଉନ୍ନୟନ ପରିଷଦର ସଂପାଦକ ଜଗଦୀଶ ବକ୍ସି ପାତ୍ର, ସୂଚନା ଓ ଲୋକ ସଂପର୍କ ନିର୍ଦ୍ଦେଶକ ବୈଷ୍ଣବ ପ୍ରସାଦ ମହାନ୍ତି ଏହି ଜୟନ୍ତୀ ସମାରୋହରେ କୃଷ୍ଣଚନ୍ଦ୍ର ଗଜପତିଙ୍କ ତ୍ୟାଗଦୀପ୍ତ ଜୀବନୀ ଓଡ଼ିଶାର ଯୁବପିଢ଼ିଙ୍କୁ ସବୁଦିନ ପାଇଁ ପ୍ରେରଣା ଦେଇ ଆସୁଥିବ ବୋଲି ପ୍ରକାଶ କରିଥିଲେ ।

## ସ୍ୱାସ୍ଥ୍ୟସେବାର ସୁପରିଚାଳନା ଉପରେ ସ୍ୱାସ୍ଥ୍ୟ ରାଷ୍ଟ୍ରମନ୍ତ୍ରୀଙ୍କ ଗୁରୁତ୍ୱ

ଗତ ଅପ୍ରେଲ ୩୦ ତାରିଖରେ ଭୁବନେଶ୍ୱରଠାରେ ମୁଖ୍ୟ ଜିଲ୍ଲା ଚିକିତ୍ସା ଅଧିକାରୀମାନଙ୍କର ଏକ ସମ୍ମିଳନୀ ଅନୁଷ୍ଠିତ ହୋଇଯାଇଛି । ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରୀ ଶ୍ରୀ ସନାତନ ବିଶି ଏହି ସମ୍ମିଳନୀକୁ ଉଦ୍‌ଘାଟନ କରି କହିଲେ ଯେ ସ୍ୱାସ୍ଥ୍ୟସେବା ଆବଶ୍ୟକତା ବିଷୟରେ ସରକାର ସଚେତନ ଅଛନ୍ତି । ଜନସାଧାରଣଙ୍କୁ ଗୁଣାତ୍ମକ, ପ୍ରତିରୋଧକ ତଥା ଆରୋଗ୍ୟକାରୀ ସ୍ୱାସ୍ଥ୍ୟ ସେବାର ସୁବିଧା ପ୍ରଦାନ ନିମନ୍ତେ ଯଥେଷ୍ଟ ବ୍ୟବସ୍ଥା କରାଯାଉଛି । ସ୍ୱାସ୍ଥ୍ୟସେବା କ୍ଷେତ୍ରକୁ ସୁଦୃଢ଼ କରିବା ଏବଂ ପରିଚାଳନାରେ ଉନ୍ନତି ଆଣିବା ଦିଗରେ କାର୍ଯ୍ୟ କରିବା ପାଇଁ ମନ୍ତ୍ରୀ ଶ୍ରୀ ବିଶି ପରାମର୍ଶ ଦେଇଛନ୍ତି । ରାଜ୍ୟର ଆଦିବାସୀ ଅଧ୍ୟୁଷିତ ପଛୁଆ ଅଞ୍ଚଳରେ ସ୍ୱାସ୍ଥ୍ୟସେବାର ଉନ୍ନତି ଉପରେ ଗୁରୁତ୍ୱ ଆରୋପ କରିବା ସହିତ ମାତୃ ଓ ଶିଶୁ ମୃତ୍ୟୁହାର ହ୍ରାସ, ପୁଷ୍ଟିହୀନତା ଦୂରୀକରଣ ଏବଂ ମ୍ୟାଲେରିଆ, ପୋଲିଓ, କୁଷ୍ଠ ନିରାକରଣ ଏବଂ ଅନ୍ୟାନ୍ୟ ସଂକ୍ରମଣ ରୋଗ ଆଦିର ନିୟନ୍ତ୍ରଣ କାର୍ଯ୍ୟକ୍ରମ ଉପରେ ବିଶେଷ ଧ୍ୟାନ ଦିଆଯିବାକୁ କହିଥିଲେ । ସ୍ୱାସ୍ଥ୍ୟ ଭିତ୍ତିଭୂମି ଉନ୍ନୟନ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରାଯିବା, ଯନ୍ତ୍ରପାତିର ବ୍ୟବହାର ଓ ରକ୍ଷଣାବେକ୍ଷଣ, ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରରୁ ଆରମ୍ଭ କରି ଜିଲ୍ଲା ସଦର ମହକୁମା ଡାକ୍ତରଖାନାରେ ଉନ୍ନତମାନର ସେବା ପ୍ରଦାନ କ୍ଷେତ୍ରରେ ମୁଖ୍ୟ ଜିଲ୍ଲା ଚିକିତ୍ସା ଅଧିକାରୀଙ୍କର ଗୁରୁଦାୟିତ୍ୱ ରହିଛି । ସେମାନେ ସେମାନଙ୍କର ଏହି ଦାୟିତ୍ୱକୁ ସୂଚାରୁରୂପେ ସଂପାଦନ କରି ସାଧାରଣ ଲୋକଙ୍କର ଆସ୍ଥାଭାଜନ ହେବା ଉଚିତ୍ ବୋଲି ମନ୍ତ୍ରୀ ଶ୍ରୀ ବିଶି ପରାମର୍ଶ ଦେଇଥିଲେ ।

ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ କମିଶନର ତଥା ଶାସନ ସଚିବ ତୁହିନକାନ୍ତ ପାଣ୍ଡେ ସ୍ୱାସ୍ଥ୍ୟସେବା ବ୍ୟବସ୍ଥାରେ ଉନ୍ନତି ଆଣିବା ଦିଗରେ ଗ୍ରହଣ କରାଯାଇଥିବା ବିଭିନ୍ନ ପଦକ୍ଷେପ ସଂପର୍କରେ ସୂଚନା ଦେଇ ସ୍ୱାସ୍ଥ୍ୟସେବା ପ୍ରଦାନ କ୍ଷେତ୍ରରେ ସି.ଡି.ଏମ୍.ଓ.ମାନେ କେତେକ ଦିଗକୁ ଅଗ୍ରାଧିକାର ଦେଇ କାର୍ଯ୍ୟ କରିବା ଆବଶ୍ୟକ ବୋଲି କହିଥିଲେ ।

ସ୍ୱାସ୍ଥ୍ୟସେବା ନିର୍ଦ୍ଦେଶକ ଡଃ ଶୁକଦେବ ସେଠୀ ସ୍ୱାଗତ ଭାଷଣ ପ୍ରଦାନ କରି ଏହି ସମ୍ମିଳନୀର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସମ୍ପର୍କରେ ଆଲୋକପାତ କରିଥିଲେ । ଅନ୍ୟମାନଙ୍କ ମଧ୍ୟରେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ଅତିରିକ୍ତ ଶାସନ ସଚିବ ଭବାନୀଶଙ୍କର ପଣ୍ଡା, ଏଡ୍‌ସ ନିୟନ୍ତ୍ରଣ ସୋସାଇଟି ପ୍ରକଳ୍ପ ନିର୍ଦ୍ଦେଶକ ପରମେଶ୍ୱର ସ୍ୱାଇଁ, ପରିବାର କଲ୍ୟାଣ ନିର୍ଦ୍ଦେଶକ ଡାଃ ଏସ୍. ନାୟକଙ୍କ ସମେତ ବିଭିନ୍ନ ଜିଲ୍ଲାର ମୁଖ୍ୟ ଚିକିତ୍ସା ଅଧିକାରୀ, ଅତିରିକ୍ତ ମୁଖ୍ୟ ଚିକିତ୍ସା ଅଧିକାରୀ ଏବଂ ଅନ୍ୟାନ୍ୟ ବିଭାଗୀୟ ପଦାଧିକାରୀମାନେ ଯୋଗ ଦେଇ ଆଲୋଚନାରେ ଅଂଶଗ୍ରହଣ କରିଥିଲେ । ଏଥିରେ

ସ୍ୱାସ୍ଥ୍ୟସେବା କ୍ଷେତ୍ରରେ କାର୍ଯ୍ୟକାରୀ କରାଯାଉଥିବା ବିଭିନ୍ନ କାର୍ଯ୍ୟକ୍ରମ ସଂପର୍କରେ ଆଲୋଚନା କରାଯିବା ସହିତ ଉନ୍ନତି ଆଣିବା ଦିଗରେ ଆବଶ୍ୟକ ପଦକ୍ଷେପ ଗ୍ରହଣ କରାଯିବା ଉପରେ ମଧ୍ୟ ଆଲୋଚନା କରାଯାଇଥିଲା ।

## ଦୃଷ୍ଟିହୀନତା ହ୍ରାସ ପାଇଁ ରାଜ୍ୟ ସରକାରଙ୍କ ଉଦ୍ୟମ ଅବ୍ୟାହତ

ଦୃଷ୍ଟିହୀନତା ହାର ହ୍ରାସ ପାଇଁ ୧୯୭୮ ମସିହାରୁ ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ଜାତୀୟ ଦୃଷ୍ଟି ହୀନତା ନିୟନ୍ତ୍ରଣ କାର୍ଯ୍ୟକ୍ରମ ସଂପର୍କରେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ଶାସନ ସଚିବ ଶ୍ରୀ ତୁହିନ କାନ୍ତ ପାଣ୍ଡେ ଗତ ଅପ୍ରେଲ ୧୧ ତାରିଖରେ ସମୀକ୍ଷା କରିଛନ୍ତି । ଏହି କାର୍ଯ୍ୟକ୍ରମକୁ ବ୍ୟାପକ ତଥା ଲୋକାଭିମୁଖୀ କରିବାକୁ ଶ୍ରୀ ପାଣ୍ଡେ ନିର୍ଦ୍ଦେଶ ଦେବା ସହିତ ନୂତନ ମାଇକ୍ରୋସ୍କୋପ ଯୋଗାଇ ଦିଆଯିବ ବୋଲି କହିଛନ୍ତି । ଚକ୍ଷୁ ଦାନ କାର୍ଯ୍ୟକ୍ରମ ପାଇଁ ଚକ୍ଷୁ ବ୍ୟାଙ୍କର ଫଳପ୍ରଦ କାର୍ଯ୍ୟକାରିତା ସଂପର୍କରେ ଏକ ଯୋଜନା ପ୍ରସ୍ତୁତ କରିବାକୁ ପରାମର୍ଶ ଦେଇଛନ୍ତି ।

ସମୀକ୍ଷା ବିବରଣୀରୁ ପ୍ରକାଶ ଯେ ୨୦୦୭-୦୮ ବର୍ଷରେ ଏକ ଲକ୍ଷ ୨୪ ହଜାର ମୋତିଆବିନ୍ଦୁ ଅପରେସନ କରାଯିବା ପାଇଁ ଲକ୍ଷ୍ୟଧାର୍ଯ୍ୟ କରାଯାଇଥିବା ବେଳେ ପ୍ରାୟ ୯୫ ହଜାର ମୋତିଆବିନ୍ଦୁ ଅପରେସନ କରାଯାଇଛି । ୫ ବର୍ଷରୁ ୧୪ ବର୍ଷ ପର୍ଯ୍ୟନ୍ତ ଏକ ଲକ୍ଷ ଛାତ୍ରଛାତ୍ରୀଙ୍କ ଚକ୍ଷୁ ପରୀକ୍ଷା ପାଇଁ ଲକ୍ଷ୍ୟାଧାର୍ଯ୍ୟ ଥାଇ ୧ ଲକ୍ଷ ୮୨ ହଜାର ୪୧୬ ଜଣଙ୍କର ଚକ୍ଷୁ ପରୀକ୍ଷା କରାଯାଇଛି । ପ୍ରାୟ ୧୦ ହଜାର ଛାତ୍ରଛାତ୍ରୀଙ୍କର ଆଖି ଖରାପ ଥିବା ଜଣାପଡ଼ିଛି । ସେଥିରୁ ୪୫୦୦ରୁ ଉର୍ଦ୍ଧ୍ୱକୁ ଚଷମା ଯୋଗାଇ ଦିଆଯାଇଛି । ଚକ୍ଷୁ ଦାନ କାର୍ଯ୍ୟକ୍ରମରେ ୮୫ଟି ଚକ୍ଷୁ ସଂଗ୍ରହ କରାଯାଇ ୫୪ଟି ଚକ୍ଷୁ ରୋପଣ କରାଯାଇଛି । ୨୦୦୭-୦୮ ଆର୍ଥିକ ବର୍ଷରେ କେନ୍ଦ୍ର ସରକାର ଏହି କାର୍ଯ୍ୟକ୍ରମ ବାବଦରେ ୩ କୋଟି ୬୮ ଲକ୍ଷ ୫୪ ହଜାର ୯୭୭ ଟଙ୍କା ପ୍ରଦାନ କରିଥିବାବେଳେ ଚଳିତ ବର୍ଷ ୫ କୋଟି ଟଙ୍କା ପ୍ରଦାନ କରିବେ ବୋଲି ଜଣାପଡ଼ିଛି । ପ୍ରକାଶ ଥାଉକି କେନ୍ଦ୍ର ସରକାର ଏହି କାର୍ଯ୍ୟକ୍ରମ ପାଇଁ ଶତ ପ୍ରତିଶତ ସହାୟତା ପ୍ରଦାନ କରିଥାନ୍ତି । ଓଡ଼ିଶାକୁ ଏଥିପାଇଁ ଅଧିକ ଅର୍ଥ ପ୍ରଦାନ କରାଯିବା ସଂପର୍କରେ ବୈଠକରେ ଆଲୋଚନା କରାଯାଇଥିଲା । ରାଜ୍ୟର ତିନିଗୋଟି ମେଡ଼ିକାଲ କଲେଜ ଓ ହସ୍‌ପିଟାଲକୁ ଯନ୍ତ୍ରପାତି କ୍ରୟ ନିମନ୍ତେ ୧୧୦ ଲକ୍ଷ ଟଙ୍କା ଏବଂ ୩୦ଟି ଯାକ ଜିଲ୍ଲା ଦୃଷ୍ଟିହୀନତା ନିୟନ୍ତ୍ରଣ ସୋସାଇଟିକୁ ବିଭିନ୍ନ ପଦାର୍ଥ କ୍ରୟ ବାବଦକୁ ୮.୮୦ ଲକ୍ଷ ଟଙ୍କା ପ୍ରଦାନ କରାଯିବା ସହିତ ଭିଜନ କେନ୍ଦ୍ର ପ୍ରତିଷ୍ଠା କରିବା ନିମନ୍ତେ ମଧ୍ୟ ଆର୍ଥିକ ସହାୟତା ପ୍ରଦାନ କରାଯାଇଥିଲା । ବିଭିନ୍ନ ସମୟରେ ପ୍ରଦାନ କରାଯାଉଥିବା ଅର୍ଥର ବିନିଯୋଗ କରି ଠିକ୍ ସମୟରେ ବିନିଯୋଗ ପ୍ରମାଣପତ୍ର ଦାଖଲ କରାଯିବା ଉପରେ ବୈଠକରେ ଗୁରୁତ୍ୱ ଆରୋପ କରାଯାଇଥିଲା । ଗତ ବର୍ଷର ମୋତିଆବିନ୍ଦୁ ଅପରେସନର ହାରକୁ ଦୃଷ୍ଟିରେ ରଖି ଚଳିତ ବର୍ଷ ଏକ ଲକ୍ଷ ମୋତିଆବିନ୍ଦୁ ଅପରେସନ ପାଇଁ ଲକ୍ଷ୍ୟଧାର୍ଯ୍ୟ କରାଯାଇଛି ।

ସ୍ୱାସ୍ଥ୍ୟସେବା ନିର୍ଦ୍ଦେଶକଙ୍କ ସମ୍ମିଳନୀ କକ୍ଷରେ ଅନୁଷ୍ଠିତ ଉକ୍ତ ବୈଠକରେ ମିଶନ ନିର୍ଦ୍ଦେଶକ ଶ୍ରୀ ସୁଶୀଲ କୁମାର ଲୋହାନୀ, ତତ୍କାଳୀନ ସ୍ୱାସ୍ଥ୍ୟସେବା ନିର୍ଦ୍ଦେଶକ ଡାଃ ଶୁକଦେବ ସେଠୀ, ଯୁଗ୍ମ ନିର୍ଦ୍ଦେଶିକା ଡାଃ ପ୍ରମିଳା ପାଣିଗ୍ରାହୀ, ପ୍ରଶାସନିକ ଅଧିକାରୀ ଶ୍ରୀ ରଜନୀକାନ୍ତ ଦେ, କେନ୍ଦ୍ର ଜାତୀୟ ଦୃଷ୍ଟିହୀନତା ନିୟନ୍ତ୍ରଣ ଉପସହକାରୀ ମହାନିର୍ଦ୍ଦେଶକ ଡାଃ ଲି. ରାଜଶେଖରଙ୍କ ସମେତ ମେଡ଼ିକାଲ କଲେଜ ଓ ହସ୍‌ପିଟାଲର ବିଭାଗୀୟ ମୁଖ୍ୟ ପ୍ରଫେସର ତଥା ବିଭିନ୍ନ ଜିଲ୍ଲାର କାର୍ଯ୍ୟକ୍ରମ ଅଧିକାରୀମାନେ ଯୋଗ ଦେଇଥିଲେ ।

## ଅଂଶୁଘାତ ମୁକାବିଲା ପାଇଁ ସ୍ୱାସ୍ଥ୍ୟ ବିଭାଗ ପକ୍ଷରୁ ବିଭିନ୍ନ ପଦକ୍ଷେପ

ରାଜ୍ୟରେ ଗ୍ରୀଷ୍ମ ପ୍ରବାହକୁ ଦୃଷ୍ଟିରେ ରଖି ସମ୍ଭାବ୍ୟ ଅଂଶୁଘାତର ମୁକାବିଲା ପାଇଁ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ପକ୍ଷରୁ ବ୍ୟାପକ ପଦକ୍ଷେପ ଗ୍ରହଣ କରାଯାଇଛି । କେନ୍ଦ୍ରୀୟ ଔଷଧ ଭଣ୍ଡାର ସମେତ ସମସ୍ତ ଚିକିତ୍ସାଳୟମାନଙ୍କରେ ଯଥେଷ୍ଟ ପରିମାଣର ଔଷଧ ମହଜୁଦ ରଖାଯାଇଛି । ସମସ୍ତ ଡାକ୍ତରଖାନାକୁ ଯଥେଷ୍ଟ ପରିମାଣର ଆବଶ୍ୟକ ଔଷଧ ଯୋଗାଇ ଦିଆଯିବା ସହିତ ଆଜି ସୁଦ୍ଧା ଭୁବନେଶ୍ୱରସ୍ଥିତ କେନ୍ଦ୍ରୀୟ ଔଷଧ ଭଣ୍ଡାରରେ ୭୫୧୪୬ ଓ.ଆର୍.ଏସ୍. ପ୍ୟାକେଟ୍, ୫୮୦୭୭ ବୋତଲ ସାଲାଇନ, ୩୯୪୫୦ ପାରାସିଟାମଲ ଆମ୍ପୁଲ, ୧୭୧୨୦ ଫେନିଟୋନ ଆମ୍ପୁଲ, ୨୩୮୧୫ ଡୋପାମାଇନ ଆମ୍ପୁଲ ୩୩୯୦୦ ରାଏଲ ଡେକ୍ସାମେଥାସନ, ୯୬୧୭୦୦୦ ହାଲୋଜେନ ବଟିକା, ୧୦୦୩୪୮୩୦ ପାରାସିଟାମଲ ବଟିକା ସମେତ ଅନ୍ୟାନ୍ୟ ଔଷଧ ମହଜୁଦ ରହିଛି । ଆବଶ୍ୟକତା ଅନୁଯାୟୀ ଚିକିତ୍ସାଳୟମାନଙ୍କୁ ତୁରନ୍ତ ଔଷଧ ଯୋଗାଇ ଦେବାକୁ ମଧ୍ୟ ବ୍ୟବସ୍ଥା କରାଯାଇଛି । ଚିକିତ୍ସାଳୟରେ ଅଂଶୁଘାତ ରୋଗୀଙ୍କ ଚିକିତ୍ସା ନିମନ୍ତେ ତୁରନ୍ତ ଔଷଧ ଯୋଗାଇ ଦେବାକୁ ମଧ୍ୟ ବ୍ୟବସ୍ଥା କରାଯାଇଛି । ଚିକିତ୍ସାଳୟରେ ଅଂଶୁଘାତ ରୋଗୀଙ୍କ ଚିକିତ୍ସା ନିମନ୍ତେ ସ୍ୱତନ୍ତ୍ର ଶଯ୍ୟାର ବ୍ୟବସ୍ଥା ସହିତ ଉପଲବ୍ଧ ଏୟାର କୁଲର ଓ କୁଲରର ଉପଯୋଗ ଏବଂ ଆମ୍ବୁଲାନ୍‌ସଗୁଡ଼ିକୁ ପ୍ରସ୍ତୁତ ରଖିବାକୁ ବିଭାଗ ପକ୍ଷରୁ ନିର୍ଦ୍ଦେଶ ଦିଆଯାଇଛି । ପ୍ରତ୍ୟେକ ସ୍ୱାସ୍ଥ୍ୟ ଅନୁଷ୍ଠାନରେ ଆବଶ୍ୟକତା ଅନୁଯାୟୀ ବରଫ, ଥଣ୍ଡା ପାଣି, ମାଟି ପାତ୍ରରେ ପାଣି ରଖିବା ଏବଂ ଓ.ଆର୍.ଏସ୍. କେନ୍ଦ୍ର ଖୋଲିବାକୁ ଏହି ନିର୍ଦ୍ଦେଶାନାମାରେ କୁହାଯାଇଛି । ରାଜ୍ୟ ସଦର ମହକୁମାରେ ସ୍ୱାସ୍ଥ୍ୟସେବା ନିର୍ଦ୍ଦେଶାଳୟ

ସମେତ ସମସ୍ତ ଜିଲ୍ଲା ଓ ବ୍ଲକ୍ ଚିକିତ୍ସାଳୟରେ ନିୟନ୍ତ୍ରଣ କକ୍ଷ ଖୋଲାଯାଇଛି । ରାଜ୍ୟ ନିୟନ୍ତ୍ରଣ କକ୍ଷକୁ ଦୈନିକ ଅଂଶୁଘାତ ସଂପର୍କରେ ତଥ୍ୟ ପ୍ରଦାନ କରିବାକୁ କୁହାଯାଇଛି ।

ଭାରତୀୟ ପାଣିପାଗ ବିଭାଗ ଅନୁଯାୟୀ ଖରାଦିନେ ଓଡ଼ିଶାରେ ତାପମାତ୍ରା ଉପକୂଳ ଅଞ୍ଚଳରେ ୪୦ ଡିଗ୍ରୀ ଓ ପାହାଡ଼ିଆ ଅଞ୍ଚଳରେ ୩୦ ଡିଗ୍ରୀ ସେଣ୍ଟିଗ୍ରେଡ଼ ମଧ୍ୟରେ ରହିବା କଥା । ଯେତେବେଳେ ଏହି ତାପମାତ୍ରା ୫ ଡିଗ୍ରୀ ପର୍ଯ୍ୟନ୍ତ ବଢ଼ିଯାଏ ଓ ୪୫ ଡିଗ୍ରୀରେ ଲଗାତର ଭାବେ ଦୁଇଦିନ ଧରି ରହେ ସେତେବେଳେ ଅଂଶୁଘାତ ଆଶଙ୍କା ସୃଷ୍ଟି ହୋଇଥାଏ ।

ଅଂଶୁଘାତ ହେଲେ ମସଲସ୍ ବିନ୍ଧିବା, ଶରୀରରୁ ପ୍ରବଳ ଝାଳ ବୋହିବା, ଦୁର୍ବଳ ଲାଗିବା, ମୁଣ୍ଡ ବିନ୍ଧିବା, ବାନ୍ତି ଲାଗିବା, ମୂର୍ଚ୍ଛା ହୋଇଯିବା, ନିଦୁଆ ନିଦୁଆ ଲାଗିବା ଆଦି ଭଳି ଲକ୍ଷଣ ପ୍ରକାଶ ପାଇଥାଏ । ଏ ସବୁ ପ୍ରତି ଜନସାଧାରଣ ସଚେତନ ରହିବା ଆବଶ୍ୟକ । ଏଥିପାଇଁ ସ୍ୱାସ୍ଥ୍ୟ ବିଭାଗ ପକ୍ଷରୁ ଅଂଶୁଘାତରୁ ରକ୍ଷା ପାଇବା ପାଇଁ କ'ଣ କରିବା ଓ କ'ଣ ନକରିବା ଆଦି ସଂପର୍କରେ ସଚେତନ କରିବା ନିମନ୍ତେ ବ୍ୟାପକ ପଦକ୍ଷେପ ଗ୍ରହଣ କରାଯାଉଛି । ରେଡ଼ିଓ, ଟି.ଭି., ଖବରକାଗଜ, ପୋଷ୍ଟର ଓ ଲିଫ୍‌ଲେଟ ଆଦି ମାଧ୍ୟମରେ ଜନସାଧାରଣଙ୍କ ଅବଗତି ତଥା ସଚେତନ ପାଇଁ ନିୟମିତ ଆବଶ୍ୟକ ସୂଚନା ପ୍ରଦାନ ପାଇଁ ବ୍ୟବସ୍ଥା ହୋଇଛି ବୋଲି ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ସୂତ୍ରରୁ ପ୍ରକାଶ ।

## ନବଜାତ ଶିଶୁର ପାଳନ ଓ ସ୍ୱାସ୍ଥ୍ୟ ସୁରକ୍ଷା ପାଇଁ ୯ଟି ଜିଲ୍ଲାରେ 'ଯଶୋଦା ଯୋଜନା' କାର୍ଯ୍ୟକାରୀ ହେବ : ସ୍ୱାସ୍ଥ୍ୟ ମନ୍ତ୍ରୀ

ନବଜାତ ଶିଶୁର ଲାଳନ ପାଳନ ଓ ସ୍ୱାସ୍ଥ୍ୟର ସୁରକ୍ଷା ପାଇଁ ରାଜ୍ୟର ୯ ଗୋଟି ଜିଲ୍ଲାରେ 'ଯଶୋଦା' ଯୋଜନା କାର୍ଯ୍ୟକାରୀ କରାଯିବ । ଏହି ଯୋଜନାରେ ନିଯୁକ୍ତ ଯଶୋଦାମାନ ହସ୍‌ପିଟାଲକୁ ଆସୁଥିବା ଗର୍ଭବତୀ ମହିଳାଙ୍କୁ ପ୍ରସବ ପରେ ତୁରନ୍ତ ହସ୍‌ପିଟାଲରୁ ନଯିବା ପାଇଁ ପ୍ରବର୍ତ୍ତାଇବା ସହ ନବଜାତ ଶିଶୁର ଲାଳନ ପାଳନ ଓ ସ୍ୱାସ୍ଥ୍ୟର ସୁରକ୍ଷା ସଂପର୍କରେ ପରାମର୍ଶ ଦେବେ । ଫଳରେ ନବଜାତ ଶିଶୁ ମୃତ୍ୟୁହାର ହ୍ରାସ ଦିଗରେ ଏହା ସହାୟକ ହୋଇପାରିବ ବୋଲି ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସନାତନ ବିଶି କହିଛନ୍ତି ।

ମନ୍ତ୍ରୀ ଶ୍ରୀ ବିଶି କହିଛନ୍ତି ଯେ, ରାଜ୍ୟରେ ମା' ଓ ଶିଶୁମାନଙ୍କୁ ଉତ୍ତମ ସ୍ୱାସ୍ଥ୍ୟ ସେବା ଯୋଗାଇ ଦେବା ସହ ଆନୁଷ୍ଠାନିକ ପ୍ରସବକୁ ପ୍ରୋତ୍ସାହିତ କରି ମାତୃ ଓ ଶିଶୁ ମୃତ୍ୟୁହାର ହ୍ରାସ ପାଇଁ ଶିଶୁ ପ୍ରଜନନ ସ୍ୱାସ୍ଥ୍ୟ (ଦ୍ୱିତୀୟ ପର୍ଯ୍ୟାୟ) ମାଧ୍ୟମରେ କାର୍ଯ୍ୟକାରୀ କରାଯାଉଥିବା ବିଭିନ୍ନ ଯୋଜନାକୁ ତ୍ୱରାନ୍ୱିତ, ଅଧିକ ସୁଦୃଢ଼ ତଥା ଫଳପ୍ରଦ କରିବା ପାଇଁ ରାଜ୍ୟ ସରକାର ବିଭିନ୍ନ ପଦକ୍ଷେପ ଗ୍ରହଣ କରିଛନ୍ତି । ଆନୁଷ୍ଠାନିକ ପ୍ରସବକୁ ପ୍ରୋତ୍ସାହିତ କରାଯାଉଛି । ଫଳରେ ଗତ ଦୁଇ ବର୍ଷ ମଧ୍ୟରେ ଆନୁଷ୍ଠାନିକ ପ୍ରସବ ହାର ୩୪ରୁ ୬୧ ପ୍ରତିଶତକୁ ବୃଦ୍ଧି ପାଇଛି । ସେହିପରି ଜାତୀୟ ସ୍ତରରେ ମାତୃ ମୃତ୍ୟୁହାର ପ୍ରତି ଏକ ଲକ୍ଷ ମା'ଙ୍କ କ୍ଷେତ୍ରରେ ୪୦୧ ଏବଂ ଶିଶୁ ମୃତ୍ୟୁହାର ପ୍ରତି ଏକ ହଜାର ଜନ୍ମିତ ଶିଶୁଙ୍କ କ୍ଷେତ୍ରରେ ୫୮ ଥିବାବେଳେ ଓଡ଼ିଶାରେ ଏହା ଯଥାକ୍ରମେ ୩୫୮ ଓ ୭୩ ଅଛି । ଏହାକୁ ଆହୁରି ହ୍ରାସ କରିବା ସହିତ ୨୦୧୦ ମସିହା ସୁଦ୍ଧା ମାତୃ ମୃତ୍ୟୁହାର ୨୫୦ ଶିଶୁ ମୃତ୍ୟୁହାର ୫୦କୁ କମାଇବା ପାଇଁ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ପକ୍ଷରୁ ଉଦ୍ୟମ ଜାରି ରହିଛି । ଏହି କାର୍ଯ୍ୟକ୍ରମକୁ ସଫଳ କରି ରାଜ୍ୟ ହାସଲ ପାଇଁ ରାଜ୍ୟ ସରକାରଙ୍କୁ ସହଯୋଗ ଓ ସହାୟତା ପ୍ରଦାନ ନିମନ୍ତେ 'ନିପି' ସହଯୋଗର ହାତ ବଢ଼ାଇଛି । ଗତ ୨୦୦୭ ମସିହା ଡିସେମ୍ବର ମାସ ୧୩ ତାରିଖ ଦିନ ରାଜ୍ୟ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ଓ ନିପି ମଧ୍ୟରେ ଏକ ବୁଝାମଣା ପତ୍ର ମଧ୍ୟ ସ୍ୱାକ୍ଷରିତ ହୋଇଛି । ଉକ୍ତ ବୁଝାମଣା ପତ୍ର ଅନୁଯାୟୀ ଓଡ଼ିଶାରେ ମାତୃ ଓ ଶିଶୁ ମୃତ୍ୟୁହାର ହ୍ରାସ ପାଇଁ ନିପି ସହାୟତା ପ୍ରଦାନ କରୁଛି । ହସ୍‌ପିଟାଲକୁ ପ୍ରସବ ପାଇଁ ଆସୁଥିବା ଗର୍ଭବତୀ ମହିଳାମାନେ ପ୍ରସବ ପରେ ତୁରନ୍ତ ହସପିଟାଲରୁ ନଯାଇ ଅତି କମ୍‌ରେ ୪୮ ଘଣ୍ଟା ରହିବା ପାଇଁ ପ୍ରବର୍ତ୍ତାଇବା ସହିତ ସେମାନଙ୍କୁ ନବଜାତ ଶିଶୁର ଲାଳନପାଳନ ଓ ସ୍ୱାସ୍ଥ୍ୟ ସୁରକ୍ଷା ସଂପର୍କରେ ପରାମର୍ଶ ଦେବା ନିମନ୍ତେ ନିପି ପକ୍ଷରୁ ଏହି ଯୋଜନାରେ 'ଯଶୋଦା'ଙ୍କୁ ନିଯୁକ୍ତ କରାଯାଉଛି । ସେମାନେ ସିଫ୍‌ଟରେ ହସ୍‌ପିଟାଲରେ ୨୪ ଘଣ୍ଟା ସେବା ପ୍ରଦାନ କରିବେ । ଯଶୋଦାଙ୍କୁ ମାସିକ ତିନି ହଜାର ଟଙ୍କା ଆର୍ଥିକ ପ୍ରୋତ୍ସାହନ ପ୍ରଦାନ କରାଯିବା ସହିତ ପ୍ରୋତ୍ସାହିତ କରାଯିବ । ୯ଟି ଜିଲ୍ଲାରେ ଏହା କାର୍ଯ୍ୟକାରୀ କରାଯିବ । ବର୍ତ୍ତମାନ ପାଇଁ ସମ୍ବଲପୁର, ଅନୁଗୁଳ ଓ ଝାରସୁଗୁଡ଼ା ଜିଲ୍ଲାରେ ଆରମ୍ଭ କରାଯାଇଛି । ସମ୍ବଲପୁର ଓ ଅନୁଗୁଳ ଜିଲ୍ଲା ସଦର ମହକୁମା ହସ୍‌ପିଟାଲରେ ୧୨ ଜଣ ଲେଖା ଓ ଝାରସୁଗୁଡ଼ା ଜିଲ୍ଲା ସଦର ମହକୁମା ହସ୍‌ପିଟାଲରେ ୯ ଜଣ ଯଶୋଦାଙ୍କୁ ନିଯୁକ୍ତ କରାଯାଇଛି । ଜିଲ୍ଲାର ଯେଉଁ ହସ୍‌ପିଟାଲ ବା ପ୍ରାଥମିକ/ଗୋଷ୍ଠୀ ସ୍ୱାସ୍ଥ୍ୟ କେନ୍ଦ୍ରରେ ମାସକୁ ୫୦ରୁ ଅଧିକ ପ୍ରସବ ବା ଶିଶୁ ଜନ୍ମ ହେଉଛନ୍ତି, ସେହି ସବୁ ସ୍ୱାସ୍ଥ୍ୟ ଅନୁଷ୍ଠାନରେ ୨୪ ଘଣ୍ଟା ସେବା ପ୍ରଦାନ ପାଇଁ ଆବଶ୍ୟକତା ଅନୁଯାୟୀ ଯଶୋଦାଙ୍କୁ ନିଯୁକ୍ତ କରାଯିବ । ଖୁବ୍ ଶୀଘ୍ର ବାଲେଶ୍ୱର, କେନ୍ଦୁଝର, କୋରାପୁଟ, ରାୟଗଡ଼ା, ମାଲକାନଗିରି ଓ କଳାହାଣ୍ଡି ଜିଲ୍ଲାରେ ଆରମ୍ଭ କରାଯିବ । ଏହି ଯଶୋଦା ଯୋଜନା ମାତୃ ଓ ଶିଶୁ ମୃତ୍ୟୁ ହାର ହ୍ରାସ ତଥା ସ୍ୱାସ୍ଥ୍ୟ ସଚେତନ କରିବା ଦିଗରେ ସହାୟକ ହୋଇପାରିବ ବୋଲି ମନ୍ତ୍ରୀ ଶ୍ରୀ ବିଶି କହିଛନ୍ତି ।

# କାର୍ଯ୍ୟାଳୟରେ ମହିଳାଙ୍କ ପ୍ରତି ଅସଦାଚରଣ ଅଭିଯୋଗ ମିଳିଲେ ଅଭିଯୋଗ ବାକ୍ସ ବସାଯିବ

କାର୍ଯ୍ୟାଳୟମାନଙ୍କରେ କାର୍ଯ୍ୟ କରୁଥିବା ମହିଳା କର୍ମଚାରୀଙ୍କ ପ୍ରତି ଅସଦାଚରଣ ସଂପର୍କରେ ଅଭିଯୋଗ ଶୁଣିବା ପାଇଁ ରାଜ୍ୟ ସରକାର ଏକ ରାଜ୍ୟସ୍ତରୀୟ ଅଭିଯୋଗ କମିଟି ଗଠନ କରିଛନ୍ତି । ଏହି କମିଟି ପକ୍ଷରୁ ସଚିବାଳୟ, ରାଜୀବ ଭବନ, ନ'ତାଲା ସମେତ ରାଜଧାନୀର ବିଭିନ୍ନ କାର୍ଯ୍ୟାଳୟରେ ଅଭିଯୋଗ ବାକ୍ସ ବସାଯାଇ ସଚେତନତା ସୃଷ୍ଟି ପାଇଁ ଉଦ୍ୟମ କରାଯାଉଛି ।

ପ୍ରକାଶ ଥାଉ କି, କାର୍ଯ୍ୟାଳୟରେ ମହିଳା କର୍ମଚାରୀଙ୍କ ପ୍ରତି ହେଉଥିବା ଅସଦାଚରଣ ସଂପର୍କରେ ଅଭିଯୋଗ ଶୁଣିବା ପାଇଁ ୧୯୯୯ ମସିହାରେ ଏହି କମିଟି ଆରମ୍ଭ ହୋଇଥିଲା । ପରବର୍ତ୍ତୀ ସମୟରେ ୨୦୦୩ ମସିହାରେ ଏହାର ପୁନର୍ଗଠନ କରାଯାଇଥିଲା । ୨୦୦୬ ମସିହାରେ ସମବାୟ ବିଭାଗ ପ୍ରମୁଖ ଶାସନ ସଚିବ ଶ୍ରୀମତୀ ମଧୁର ଷଡ଼ଙ୍ଗୀଙ୍କ ଅଧ୍ୟକ୍ଷତାରେ ଏହି କମିଟି ପୁଣି ଥରେ ପୁନର୍ଗଠିତ ହୋଇଥିବାବେଳେ ଚଳିତ ଅପ୍ରେଲ ମାସ ୪ ତାରିଖରେ ଆଉ ଥରେ ଏହି କମିଟି ପୁନର୍ଗଠିତ ହୋଇଚି । ଏଥିରେ ମଧ ସମବାୟ ବିଭାଗ ପ୍ରମୁଖ ଶାସନ ସଚିବ ଶ୍ରୀମତୀ ଅଧ୍ୟକ୍ଷା ରହିଥିବାବେଳେ ମହିଳା ଓ ଶିଶୁ ବିକାଶ ବିଭାଗ କମିଶନର ତଥା ଶାସନ ସଚିବ, ବିଜ୍ଞାନ ଓ ପ୍ରଯୁକ୍ତି ବିଭାଗର ଜୈବ-ପ୍ରଯୁକ୍ତି ନିର୍ଦ୍ଦେଶିକା ଶ୍ରୀମତୀ ରେବାକା ନାୟାର, ଭୁବନେଶ୍ୱର ଭିଜିଲାନ୍ସ ଏସ୍.ପି. ଶ୍ରୀମତୀ ରେଖା ଲୋହାନୀ, ପଞ୍ଚାୟତିରାଜ ବିଭାଗ ଅର୍ଥ ପରାମର୍ଶଦାତା ଶ୍ରୀମତୀ ବସନ୍ତମଂଜରୀ ପୃଷ୍ଟି, ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା ବିଭାଗ ଅନୁଶାସନ ସଚିବ ଶ୍ରୀମତୀ ବନାନୀ ମହାନ୍ତି ସଦସ୍ୟ ଏବଂ ମହିଳା ଓ ଶିଶୁ ବିକାଶ ବିଭାଗ ଉପଶାସନ ସଚିବ/ଅନୁଶାସନ ସଚିବ ସଦସ୍ୟ ଆବାହକ ରହିଛନ୍ତି ।

୨୦୦୬ ମସିହାରେ ଶ୍ରୀମତୀ ଷଡ଼ଙ୍ଗୀଙ୍କ ଅଧ୍ୟକ୍ଷତାରେ ଗଠିତ କମିଟିର ବୈଠକ ନିୟମିତ ହୋଇ କାର୍ଯ୍ୟାଳୟମାନଙ୍କରେ ମହିଳା କର୍ମଚାରୀଙ୍କପ୍ରତି ହେଉଥିବା ଅସଦାଚରଣର ବିଭିନ୍ନ ଦିଗ ସଂପର୍କରେ ଆଲୋଚନା କରାଯାଇ ସଚେତନତା ସୃଷ୍ଟି କରାଯିବା ଉପରେ ଗୁରୁତ୍ୱ ଆରୋପ କରାଯାଇଛି । ଅସଦାଚରଣ ସଂପର୍କରେ ଅଭିଯୋଗ କରିବା ପାଇଁ କମିଟି ପକ୍ଷରୁ ସଚିବାଳୟ ସମେତ ରାଜଧାନୀର ବିଭିନ୍ନ କାର୍ଯ୍ୟାଳୟରେ ଅଭିଯୋଗ ବାକ୍ସ ବସାଯାଇଛି । ମହିଳା କର୍ମଚାରୀଙ୍କ ମଧ୍ୟରେ ସଚେତନତା ସୃଷ୍ଟି ନିମନ୍ତେ ବିଭିନ୍ନ ପ୍ରକାର ପ୍ରଚାର ପତ୍ର ପ୍ରକାଶନ କରି ବଣ୍ଟନ କରିଯିବାକୁ ନିଷ୍ପତ୍ତି ଗ୍ରହଣ କରାଯାଇଛି । କମିଟି ବାରମ୍ବାର ବୈଠକ କରି ଏହା ଉପରେ ତଦାରଖ କରିଛି । ହେଲେ ବିଶେଷ ଅଭିଯୋଗ ମିଳି ନାହିଁ । ମାତ୍ର ଦୁଇଟି ଅଭିଯୋଗ ମିଳିଥିଲା । ତଦନ୍ତ ବେଳେ ସେଥିରୁ ଗୋଟିଏ ମିଥ୍ୟା ଥିଲା । ଜନୈକା କର୍ମଚାରୀଙ୍କ ନାରେ କେହି ଜଣେ ଅଭିଯୋଗ ପତ୍ର ପକାଇ ଦେଇଥିଲେ । ତେଣୁ ଅଭିଯୋଗଟି ବିଚାର ପାଇଁ ଗ୍ରହଣ ହୋଇନଥିଲା । ଅନ୍ୟ ଅଭିଯୋଗଟି ଶୁଣାଣି କରାଯାଇ ଜିଲ୍ଲାସ୍ତରୀୟ କମିଟି ନିକଟକୁ ପଠାଇ ଦିଆଯାଇଥିଲା ।

ସଚେତନତା ସୃଷ୍ଟି ହୋଇ ନପାରିଲେ ଯେତେ ଅଭିଯୋଗ ବାକ୍ସ ବସାଗଲେ ମଧ ଏହା ଏହା ସଫଳ ହୋଇପାରିବ ନାହିଁ ବୋଲି କାର୍ଯ୍ୟକ୍ରମକୁ ବ୍ୟାପକ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଥିବା ପ୍ରକାଶ ।

------